ପ୍ରିୟା

କବି : ବାଉରିବନ୍ଧୁ ଲେଙ୍କା
ମୋ : ୯୮୫୩୫୩୫୮୪୪

ପ୍ରକାଶକ : ବନଫୁଲ ପବ୍ଲିକେସନ୍ସ,
କଟକ, ଓଡ଼ିଶା
ମୋ : ୯୪୩୭୬୧୩୪୩୮

ପ୍ରଚ୍ଛଦ : ପବିତ୍ର ବ୍ରହ୍ମପୁତ୍ର ନାୟକ

ପ୍ରଥମ ପ୍ରକାଶ : ଅକ୍ଷୟ ତୃତୀୟା, ୨୦୨୧
ମୂଲ୍ୟ : ୧୨୫ ଟଙ୍କା ମାତ୍ର

**Priya**
By **Bauribandhu Lenka**

Published By : **Banaphula Publications**
Cuttack, Odisha
Mo : 9437613438

Cover : **Pabitra Brahmaputra Nayak**

Price : **125 /-**

# ଉତ୍ସର୍ଗ

ଆଦ୍ୟ ଯୌବନର ଅଳ୍ପ କେତୋଟି ବସନ୍ତକୁ ଅତିକ୍ରମ କଲାପରେ ମୋର ଜୀବନସାଥୀ ରୂପେ ଉଭାହୋଇ, ଅନେକ ଘାତ ପ୍ରତିଘାତ ଓ ଉତ୍ଥାନ ପତନର ସମ୍ମୁଖୀନ ହେବା ସତ୍ତ୍ୱେ ଆଜି ପର୍ଯ୍ୟନ୍ତ ମୋର ପ୍ରତିଟି ପଦକ୍ଷେପରେ ଛାଇ ପରି ଚାଲୁଥିବା ମୋର ଧର୍ମପତ୍ନୀ ପୁଷ୍ପାଞ୍ଜଳିଙ୍କୁ ମୋର ଏହି ସାରସ୍ୱତ କୃତି 'ପ୍ରିୟା'କୁ ଉତ୍ସର୍ଗ କରୁଛି ।

– ବାଉରିବନ୍ଧୁ



" ତୁମ ପାଇଁ ପ୍ରିୟା ସରଗ ନରକ
ମରତ ମୋ ଏଇଠାରେ
ଏଇ ଘର ମୋର ବଇକୁଣ୍ଠପୁର
ଶେଷ ନିଶ୍ୱାସ ଏଠାରେ "

# କୃତଜ୍ଞତା

ପୁସ୍ତକଟି ରଚନା କରିବାରେ ମୋତେ ମାନସିକ ସ୍ତରରେ ଅକୁଣ୍ଠ ସହଯୋଗ ଓ ପ୍ରେରଣା ଦେଇଥିବା ମୋର ଧର୍ମପତ୍ନୀ ପୁଷ୍ପାଞ୍ଜଳି, କନ୍ୟା ଶୁଚିସ୍ମିତା ଓ ପ୍ରୀତିସ୍ମିତା, ପୁତ୍ରବଧୂ ପ୍ରିୟମ୍ବଦା, ପୁତ୍ର ଅମିତ ଏବଂ ଜାମାତା ତାରକେଶ ଓ ସୂର୍ଯ୍ୟପ୍ରକାଶ । ଏ ସମସ୍ତଙ୍କୁ ମୋର ହୃଦୟରୁ କୃତଜ୍ଞତା ଜଣାଉଛି ।

- ବାଉରିବନ୍ଧୁ



" ପ୍ରେମରେ ବତୁରା ମନକୁ ମୋ ପ୍ରିୟା
ହୃଦୟେ ଦେଇଛ ସ୍ଥାନ
କାଳେ କିଏ ତାକୁ ଚୋରି କରିନେବ
ରଖିଛ ତା'ଠାରେ ଧ୍ୟାନ "

# କବିତା ସଂକଳନ ସମ୍ବନ୍ଧରେ ପଦେ

କବିର କଳ୍ପନା କେବେ ବୟସର ସରହଦ ଭିତରେ ସୀମିତ ହୋଇ ରହିପାରେନା। ଅତିକ୍ରାନ୍ତ ବୟସରେ ମଧ୍ୟ ପ୍ରେମ, ପ୍ରିୟା ଓ ତା' ସହିତ ଯୌବନର ଚିତ୍ରମାନ କବିର କଳ୍ପନା ଭିତରକୁ ଧସେଇ ପଶି ଆସିଥାଆନ୍ତି। ସେ ସବୁକୁ ନେଇ ଶବ୍ଦ ସବୁ ଯୋଡି ହୋଇଯାଆନ୍ତି ଆଉ ସୃଷ୍ଟି ହୋଇଥାଏ ପ୍ରୀତି ରସଭରା କବିତାର ନିର୍ଝରିଣୀ। କବିତାକୁ ନିବିଡ ଭାବେ ଭଲ ପାଉଥିବା ପ୍ରତ୍ୟେକ କବି ଜଣେ ଜଣେ ପ୍ରେମିକ ଆଉ କବିତା ହିଁ ସେମାନଙ୍କର ପ୍ରେମିକା କହିଲେ ଅତ୍ୟୁକ୍ତି ହେବ ନାହିଁ।

କବିତା ସଂକଳନ 'ପ୍ରିୟା'ର ଜନ୍ମ ଆକସ୍ମିକ ଭାବେ ହୋଇଥିଲା ଫେସ୍‌ବୁକ୍ ପୃଷ୍ଠାରେ ଜନୈକ ବନ୍ଧୁଙ୍କର ପ୍ରେମ କବିତା ଉପରେ ମତାମତ ଦେବା ସମୟରେ। ମତାମତଟି ଦୁଇପଦ ପ୍ରେମ କବିତା ମାଧ୍ୟମରେ ଦେବା ପରେ ଅନେକ ବନ୍ଧୁଙ୍କର ମନକୁ ଛୁଇଁଥିଲା। ଆଉ ତା' ପରେ ପ୍ରତିଦିନ ପ୍ରିୟା ଶୀର୍ଷକର ଗୋଟିଏ ଗୋଟିଏ ଅଧ୍ୟାୟ ଫେସ୍‌ବୁକ୍‌ରେ ଉପସ୍ଥାପିତ ହୋଇଥିଲା ପ୍ରିୟାର ଅନ୍ତିମ ଅଧ୍ୟାୟ ପର୍ଯ୍ୟନ୍ତ। ସେ ସବୁର ସମାହାର ଆଜି ପ୍ରିୟା ରୂପରେ ପାଠକମାନଙ୍କ ସମ୍ମୁଖରେ ଠିଆ ହୋଇଛି।

କହିରଖିବାକୁ ଚାହିଁବି ଯେ ସଂକଳିତ ସମସ୍ତ କବିତା ସମ୍ପୂର୍ଣ୍ଣ ରୂପେ କଳ୍ପନା ପ୍ରସୂତ। ନିଜର ଧର୍ମପତ୍ନୀଙ୍କୁ ଛାଡିଦେଲେ ଜୀବନରେ ଅନ୍ୟ କୌଣସି ପ୍ରେମିକା ମୋର ପ୍ରେମ ପରିଧି ଭିତରକୁ ଆସି ପାରିନାହାନ୍ତି। କଳ୍ପନାର ଅସରନ୍ତି ଇଲାକା ଭିତରକୁ ସମୟେ ସମୟେ ନିଜ ଉପରେ ବିତିଥିବା ଘଟଣାମାନ ମାନସପଟ୍ଟରେ ଆବିର୍ଭାବ ହୋଇ କବିତାର ଅଂଶବିଶେଷ ହୋଇଯାଆନ୍ତି। ସଂକଳନ ପ୍ରିୟାରେ ମଧ୍ୟ ସେପରି ଉଦାହରଣ ରହିଛି। କେବଳ ପ୍ରେମ ନୁହେଁ, ଜୀବନର ନିରାଟ ସତ୍ୟର ମଧ୍ୟ କେତେକ ସ୍ଥାନରେ ଅବତାରଣା କରାଯାଇଛି।

ବର୍ତ୍ତମାନ ଚାଲିଥିବା କିଛି ଛନ୍ଦ-ହୀନ କବିତା ଯଦିଓ ମୋ ଲେଖନୀରୁ ସୃଷ୍ଟି ହୋଇଛନ୍ତି, ସେଥିରେ ଆତ୍ମତୃପ୍ତି ମିଳିନାହିଁ। ଛନ୍ଦବଦ୍ଧ କବିତାର ମାଧୁର୍ଯ୍ୟ ଓ ରସ, ଛନ୍ଦ-ହୀନ କବିତାରେ ମିଳେନା। ଶବ୍ଦ ଚୟନ ସମୟ ସାପେକ୍ଷ ହେଲେ ମଧ୍ୟ କବିତାର ଗୋଟିଏ ପଦ ସମ୍ପୂର୍ଣ୍ଣ ହୋଇଗଲେ, କବି ମନରେ ଅପାର ଆନନ୍ଦ ମିଳିଥାଏ। ସଂସ୍କୃତରେ କୁହାଯାଏ ଯେ -

"ବାକ୍ୟମ୍ ରସାତ୍ମକମ୍ କାବ୍ୟମ୍।" ଅର୍ଥାତ କଥା ରସାପ୍ଲୁତ ହେଲେ କାବ୍ୟର ରୂପନିଏ। ରସାପ୍ଲୁତ ହେଲେ ଶ୍ରୁତିମଧୁର ହୋଇଥାଏ ଓ ମନଭିତରେ ଅଭୁଲା ଛାପ ଛାଡି ଯାଇଥାଏ।

'ପ୍ରିୟା' ସଂକଳନରେ ସମସ୍ତ କବିତା ଛନ୍ଦବଦ୍ଧ। ପ୍ରେମରସାଣିତ ଶବ୍ଦ ସମ୍ଭାର ଓ ଉପମାରେ ପରିପୂର୍ଣ୍ଣ। ପ୍ରିୟ ପାଠକ ମାନଙ୍କ ଦ୍ୱାରା ଏହା ଆଦୃତ ହେବ ବୋଲି ଆଶା କରୁଛି। ନମସ୍କାର।

- ବାଉରିବନ୍ଧୁ

## ଏଇ ଲେଖକଙ୍କ ଅନ୍ୟାନ୍ୟ ଗ୍ରନ୍ଥ

---

(୧) ଖୋଲି କହିଦେଲି କଥା ମନର (କବିତା ସଂକଳନ)
(୨) ମୋ ଗାଆଁ ମୋ କବିତା (କବିତା ସଂକଳନ)
(୩) ଶୁଣ ଗୁହାରି ହେ ବିଶ୍ୱ ବିହାରୀ (ଭକ୍ତି କବିତା ସଂକଳନ)
(୪) ମେଘଦୂତ (ଅନୁବାଦ କାବ୍ୟ)
(୫) ଋତୁସଂହାରମ୍ (ଅନୁବାଦ କାବ୍ୟ)
(୬) ଅନାବନା (କବିତା ସଂକଳନ)

# ପ୍ରିୟା-୧

କେତେବେଳେ ପ୍ରିୟା ଉଷ୍ଣ ପ୍ରସ୍ରବଣ
କେତେବେଳେ ଋରୁ ଋନ୍ଦିନୀ ରାତି
କେତେବେଳେ ସେ ଯେ ଅଶାନ୍ତ ଶ୍ରାବଣ
କେତେବେଳେ ମଧୁମାସର ପ୍ରୀତି
କେତେବେଳେ ପ୍ରିୟା ଅଶିଣ ଆକାଶେ
ପୁନେଇଁ ଜହ୍ନର ଶୋଭା ପସରା
କେତେବେଳେ ପୁଣି ଗରଜିଲା ମେଘ
ଶ୍ରାବଣ ମାସର ମେଘ ଅସରା
କେତେବେଳେ ଗାଏ ପ୍ରେମର ରାଗିଣୀ
ଅଦିନେ ବସନ୍ତ ଆସଇ ଫେରି
କେତେବେଳେ ରୁକ୍ଷ କର୍କଶ ନିଦାଘ
ସନ୍ତାପରେ ମନ ହୁଅଇ ଘାରି

# ପ୍ରିୟା-୨

ଅମରାବତୀର ରାଜକୁମାରୀ ଗୋ
ନାମ ତୁମ ରଜବତୀ
ଚାହାଣିରେ ହାଣି ମନ ନେଲ କିଣି
ଗାଇଲ ପ୍ରେମର ଗୀତି ।

ଅଣିଣ ଆକାଶେ ଭସା ବାଦଲ ମୁଁ
ତୁମେ କାଶତଣ୍ଡୀ ଫୁଲ
ରୂପ ପସରାରେ ଆଖି ଇଶାରାରେ
କଲ ମନ ହଲଚଲ ।

ଝର ଝର ଝରି ଗଲି ଧରାପରେ
ଭିଜାଇଲି ତୁମ ଅଙ୍ଗ
ଅଭିଳାଷ ତୁମ ପୂରଣ ହୋଇଲା
ପାଇଲି ତୁମର ସଙ୍ଗ ।

ଆସୁ ଆସୁ ତୁମେ ପ୍ରେମରେ ପଡ଼ିଲ
ମନ ଦେଇଦେଲ ମୋତେ
ଭାବିଛକି ମନେ ଅମରାବତୀକୁ
ଫେରିଯିବ ଛାଡ଼ି ସତେ ।

✠✠

# ପ୍ରିୟା-୩

ଧରାଦେଲେ କଥା ସରିଯିବ ବୋଲି
ରହିଲ ଟିକେ ଦୂରେଇ
ଏତେ ଦୂରୁ ଧାଇଁ ଆସିଥିଲ ପ୍ରିୟା
ମୋ ମନ ବୁଝିଲ ନାହିଁ ।
ଜନ୍ମ ଜନ୍ମାନ୍ତର ସମ୍ପର୍କ ଆମର
ରହିବ ସଦା ଅତୁଟ
ଆସୁ ବାଧା ବିଘ୍ନ ହେବି ସମ୍ମୁଖୀନ
ହେବ ଦିନେ ଆମ ଭେଟ ।

# ପ୍ରିୟା-୪

ପ୍ରୀତି ପଥ ବଡ ଖସଡା ସଜନୀ
ଥରେ ଗୋଡ ଖସିଗଲେ
ନିନ୍ଦା ଅପବାଦ ସହିବାକୁ ପଡେ
ଜାଣିଥା ଏହା ତୁ ଭଲେ ।
ପ୍ରେମ ତ କରୁଛ କାହାକୁ ଡରୁଛ
ଡରିଗଲେ ଯିବ ମରି
ପ୍ରେମରେ ପଡିଲେ ଡର ଭୟ ସବୁ
ଛାଡିବାକୁ ହୁଏ ଗୋରୀ ।
ହୃଦୟ ଦେଇଛ ମୋ ପ୍ରେମେ ପଡିଛ
ଜାଣେ ମୁଁ ତୁମର ମନ
ଜୀବନର ପଥେ ରହିବି ମୁଁ ସାଥେ
ପ୍ରତିଦିନ ପ୍ରତିକ୍ଷଣ ।

✠✠

# ପ୍ରିୟା-୫

ନିରବେ ବସିଛ          କିମ୍ପାଇ ଗୋ ପ୍ରିୟା
          ବିରସ ମନରେ ଆଜ
ମୋ ପାଖରେ ଖୋଲି          କହିବାକୁ କିଆଁ
          କରୁଅଛ ଆଜି ଲାଜ ।

ତୁମେ ଇଚ୍ଛା କଲେ          ତୋଳି ଆଣିଦେବି
          ଆକାଶରୁ ଚନ୍ଦ ତାରା
ଭରି ଦେବି ତୁମ          ଅଞ୍ଜଳିରେ ପ୍ରିୟା
          ସୁନା ରୂପା ମୋତି ହୀରା ।

ଜହ୍ନରୁ ଆଣିବି          ଜୋଛନା ଗୋ ପ୍ରିୟେ
          ତୁମ ମୁଖ ଚନ୍ଦ୍ର ପାଇଁ
ଫୁଲରୁ ସୁଗନ୍ଧ          ଆଣି ତୁମ ଅଙ୍ଗେ
          ଦେବି ସରାଗେ ଲଗାଇ ।

କୋଇଲିଠୁ ନେବି          କଳା ରଙ୍ଗ ପ୍ରିୟେ
          ରଙ୍ଗାଇବି ତୁମ କେଶ
ମୟୂରର ମନ          ନେଇ ନିଶି ଦିନ
          ରହିଥିବି ତୁମ ପାଶ ।

ସଜଳ ଜଳଦ କଜ୍ଜଳ ରଙ୍ଗରେ
ନୟନ ଦେବି ସଜେଇ
ବନ୍ଧୁଲି ଅଧର ଧାରେ ତୁମ ହସ
ଝରୁଥିବ ମୁକ୍ତା ହୋଇ ।

ତୁମ ପାଇଁ ପ୍ରିୟା ଆକାଶ ପାତାଳ
ସପ୍ତତଳ ଏକାକାର
କରିପାରେ ଯଦି କହିଦିଅ ଥରେ
ମୁଁ ତୁମର ତୁମେ ମୋର ।

✠✠

# ପ୍ରିୟା- ୬

ହୃଦୟ ମନ୍ଦିରେ ବସେଇଛ ପ୍ରିୟା
ଭୁଲି ପାରିବ କିପରି ?
ଥାଆନ୍ତୁ ନଥାନ୍ତୁ ସୂର୍ଯ୍ୟ ଅବା ଚନ୍ଦ୍ର
ଥିବି ମୁଁ ହୃଦେ ତୁମରି ।
ହୃଦୟେ ରହିଛି ସବୁ ମୁଁ ଜାଣିଛି
ବୁଝିଛି ତୁମରି ମନ ।
ପ୍ରେମ କଣ କେବେ ହୁଅଇ ପୁରୁଣା
ସେ ସଦା ଜାଜ୍ୱଲ୍ୟମାନ ।
ରହିଛି ରହିବି ତୁମ ସଙ୍ଗେ ପ୍ରିୟା
ପ୍ରେମ ଆମ ଚିରନ୍ତନ ।
ଶରୀର ଆମର ଭିନ୍ନ ହୋଇପାରେ
ଏକ ପ୍ରାଣ ଏକ ମନ ।

# ପ୍ରିୟା-୭

ଚିଠି ମୋର ପଢ଼ି ସନ୍ଦେହରେ ପଡ଼ି
ମୋ ନାମରେ ଅଭିଯୋଗ
କରି ଲେଖିଅଛ ଆଉ କାହାକୁ ମୁଁ
ଭଲ ପାଉଥିଲି ଆଗ ।
ନହେଲେ କିପରି ଲେଖନ୍ତି ଏପରି
ମନଛୁଆଁ ପ୍ରେମ ଚିଠି
ବୋଧେ ଲେଖିଅଛି ଏତେ ଭଲ କରି
ବହିରୁ ପଢ଼ି କେଉଁଠି ।
ଆଗରୁ ତ ପ୍ରେମ ଜାଣି ମୁଁ ନଥିଲି
ସତ ମୁଁ କହୁଛି ଗୋରୀ
ସୌମ୍ୟ ଅନୁପମ ମୁଖ ଦେଖି ତୁମ
ପ୍ରେମରେ ହେଲି ମୁଁ ଘାରି ।
ତୁମେ ରୂପବତୀ ତୁମେ ମଧୁମତୀ
ପ୍ରୀତିର ପ୍ରସୂନ ହୋଇ
ମନ ଉପବନେ ପ୍ରସ୍ଫୁଟିତ ହେଲ
ହୃଦୟ ତନ୍ତ୍ରୀକୁ ଛୁଇଁ ।



# ପ୍ରିୟା-୮

ମୋ ପ୍ରିୟାଠୁ ବଳି କେହି ନୁହନ୍ତି ସୁନ୍ଦର
ମୋ ପ୍ରିୟାଠୁ ବଳି କେହି ନାହାନ୍ତି ଗୁଣର
ଶୁଣୁରେ ଜହ୍ନ
କହିବୁ ପ୍ରିୟାକୁ ମୋର
ପ୍ରେମ ଆମ ଯୁଗ ଯୁଗ ରହିଛି ଅଭିନ୍ନ
ଯେତେଦିନ ଥିବ ଏ ସଂସାର
ରହିଥିବ ପ୍ରେମ ଆମ ଶାଶ୍ୱତ ଅମ୍ଳାନ ।

## ପ୍ରିୟା-୯

ଚତୁର୍ଦ୍ଦିଗ ମୋତେ        ଦିଶେ ପ୍ରେମମୟ
ତା ମଧ୍ୟେ ତୁମର ଛବି
ଆଖି ବୁଜିଦେଲେ        ଅନ୍ତର୍ମନେ ଦେଖେ
ରହିଅଛ ତୁମେ ଦ୍ରବି ।
ତୁମେ ମୋ ହାସରେ        ତୁମେ ମୋ ଭାଷରେ
ତୁମେ ମୋର ସର୍ବାଙ୍ଗରେ
ରଙ୍ଗାଇ  ଦେଇଛ        ସର୍ବାଙ୍ଗକୁ ମୋର
ପ୍ରକୀର୍ଣ୍ଣ ପ୍ରେମ ରଙ୍ଗରେ ।
ତୁମେ ନିଶ୍ୱାସରେ        ତୁମେ ପ୍ରଶ୍ୱାସରେ
ପ୍ରୀତିର ସୁଗନ୍ଧ ହୋଇ
ମହକାଉ ଅଛ        ମୋ ମନ ଅଗଂନ
ନିରନ୍ତର ପାଶେ ରହି ।

❊❊

# ପ୍ରିୟା-୧୦

ତୁମେ ବସନ୍ତର ସୌମ୍ୟ ଶାନ୍ତ କଳି
ମୁଁ ଯେ ମଦମତ୍ତ ଅଳି
ତୁମ ସେ ଲାବଣ୍ୟ ଚହଲାଏ ମନ
ଉଡେ ମୁଁ ଗୁଞ୍ଜନ ତୋଳି ।
ତୁମେ ଶରତର ଶୁଭ୍ର କୁମୁଦିନୀ
ମୁଁ ଯେ ଆକାଶର ଜହ୍ନ
ସାରା ରାତ୍ରି ଏକା ଝରାଏ ଚନ୍ଦ୍ରିକା
ତୋଷିବାକୁ ତୁମ ମନ ।
ତୁମେ ବରଷାର ବେଗବତୀ ଧାରା
ବହୁଅଛ ନଦୀ ହୋଇ
ମୁଁ ନୀଳ ସାଗର ଅତ୍ୟନ୍ତ ଆତୁର
ମିଳନର ଆଶା ନେଇ ।

❋❋

# ପ୍ରିୟା–୧୧

ତୁମେ ନିଦାଘର          ସନ୍ତପ୍ତା ଧରଣୀ
　　ମୁଁ ଯେ ଆଷାଢର ବର୍ଷା
ଭିଜାଇ ଦେବି ମୁଁ          ସାରା ଅଙ୍ଗ ତୁମ
　　ଜଗାଇ ନୂତନ ଆଶା ।
ତୁମ ଦନ୍ତ ପଂକ୍ତି          ସତେ କି ବା ମୋତି
　　ଅଶିଣ ଆକାଶେ ତାରା
ବଧୁଲି ଅଧରେ          ନବନୀତ ଧାରେ
　　ଲାଗି ରହିଛିକି ପରା ।
ଭ୍ରୂଭଙ୍ଗୀରେ ତୁମ          କୁରଙ୍ଗୀର ଠାଣି
　　ଅପୂର୍ବ ତୁମ ଚାହାଣୀ
ଝଲସି ଉଠୁଛି          ମୁଖ ଶୋଭା ତୁମ
　　ରମ୍ଭା ମେନକାକୁ ଜିଣି ।
କଣ୍ଠରେ ତୁମର          କୋଇଲିର କୁହୁ
　　ଗାଇଲେ ଝରୁଛି ମଧୁ
ତୁମେ ମୋ ପ୍ରେୟସୀ          ଅନିନ୍ଦ୍ୟ ରୂପସୀ
　　ଜନ୍ମ ଜନ୍ମାନ୍ତର ବଧୂ ।



# ପ୍ରିୟା-୧୨

ଆଗୋ ସୁକେଶିନୀ      ମୋ ପ୍ରାଣ ସଙ୍ଗିନୀ
କୃଷକଟି ବିମ୍ବଓଷ୍ଠୀ
ଗୁରୁ ନିତମ୍ବିନୀ      ଅଳସ-ଗାମିନୀ
ଚକିତ କୁରଙ୍ଗୀ ଦୃଷ୍ଟି ।
ଶୋଇଗଲେ ତୁମେ      ଅନ୍ଧାର ଘୋଟଇ
ଚେଇଁଲେ ସକାଳ ଫେରେ
ହସିଦେଲେ ଜହ୍ନ      ଲାଜେଇ ଯାଏଗୋ
କାନ୍ଦିଲେ ଶ୍ରାବଣ ଝରେ ।
ଛୁଇଁଦେଲେ ମନ୍ଦ      ମଳୟ ବହଇ
ଲହାଣି କାହାଣୀ କହେ
ତୁମେ ମୋ ପ୍ରେମର      ଅଭୁଲା ଫଗୁଣ
ଗୋଲାପୀ ବସନ୍ତଟିଏ ।

ꕥꕥ

# ପ୍ରିୟା-୧୩

ରୂପ ତୁମ ହେମ          ଗଉର ବର୍ଣ୍ଣ ଗୋ
ମୁଖ ପୁନେଇଁର ଜହ୍ନ
ଆକାଶରୁ ଖସି          ମୋ ଦୁଆରେ ଆସି
ଦେଇଦେଲ ମୋତେ ମନ ।
ତୁମ କବରୀର          କାଳିମାକୁ ଦେଖି
ରାତ୍ରିଟା ଗଲା ଲାଜେଇ
ତୁମ ନୟନର          ନୀଳିମାକୁ ନେଇ
ଆକାଶ ହେଲା ସଜେଇ ।
ତୁମ ଅଙ୍ଗରାଗ          ବାସ୍ନା ଖେଳିଗଲା
ରଜନୀଗନ୍ଧାଠୁ ବଳି
ମୋହି ନେଲ ମନ          ଚିରଦିନ ପାଇଁ
ରାଜଜେମା ଅଲିଅଳି ।

❋❋

# ପ୍ରିୟା-୧୪

ଜୀବନ ମୋ ଥିଲା          ନିରାଶାର ବାଲି
          ଧୁ ଧୁ ଖରା ତାତି
ମରୁଝର ହୋଇ          ଶୀତଳତା ଦେଲ
          ମନେ ଜଗାଇଲ ପ୍ରୀତି ।
ମୋ ଜୀବନପଥେ          ଉଭା ହୋଇ ତୁମେ
          ବଦଳେଇ ଦେଲ ଦିଗ
ଅଙ୍ଗେ ଭରିଦେଲ          ଶତ ସିଂହ ବଳ
          ଅପସରିଲା ବିରାଗ ।
ନବ ପଲ୍ଲବିତ          ଅଙ୍ଗେ ମୋହର
          ଶିହରଣ ଗଲା ଖେଳି
ନୂଆ ସ୍ୱପ୍ନ ନେଇ          ଉଠି ମୁଁ ବସିଲି
          ଲଂଘିବାକୁ ମରୁବାଲି ।
କୁନ୍ଦ କୁମୁଦ          ପ୍ରସ୍ଫୁଟିତ ହେଲେ
          ଶୁଭ୍ରତା ଗଲା ଛାଇ
ଚନ୍ଦ୍ର ଢାଳିଲା          ଜୋଛନା ରାତ୍ରିରେ
          ଅନ୍ଧାର ଗଲା ଉଭେଇ ।

**

# ପ୍ରିୟା-୧୫

ବନ୍ଧୁଲି ପରାଗେ ଅରୁଣିମା ରଙ୍ଗେ
ଉଇଁଲା ନବୀନ ସୂର୍ଯ୍ୟ
ରଙ୍ଗାଇଲା ମୋର ଜୀବନର ପଥ
ଶୁଭଇ ମଙ୍ଗଳ ତୂର୍ଯ୍ୟ ।

ସହଯାତ୍ରୀ ହେଲ ସଙ୍ଗେ ମୋ ଚାଲିଲ
ବାକି ଜୀବନର ପଥ
ଅଧା ବାଟେ ହାତ ଛାଡି ନଯିବାକୁ
କରିଲ ବଜ୍ର ଶପଥ ।

ଫୁଲର ଫଗୁଣ ରଚିଲା ତୋରଣ
ପ୍ରୀତିର କଳସୀ ଥୋଇ
ଆଜି ଫୁଲେ ଝୋଟି ନେଲା ସେ ପାଛୋଟି
ସ୍ୱାଗତିକା ଗୀତି ଗାଇ ।

ନୀଳ ଅମ୍ବରରୁ ଚନ୍ଦ୍ରମା ଝରାଏ
ଚନ୍ଦ୍ରିକା ଆସିଲା ଝରି
ମୋ ପ୍ରିୟା ଅଳକେ ଲାଖି ରହିଥିଲେ
ତୋରା ମଲ୍ଲୀଫୁଲ ପରି ।

ନିଦ୍ରାଗତା ପ୍ରିୟା        ସପନେ ବିଭୋର
ଅଳକକୁ ଦେଲା ଛୁଇଁ
ବିରହିଣୀ କଇଁ        ପାରିଲାନି ସହି
କାନ୍ଦୁଥିଲା କଇଁ କଇଁ ।

ମୋ ବାହୁ ବନ୍ଧନେ        କଣ୍ଠ ଆଲିଙ୍ଗନେ
ଶୋଇଗଲ ସୁଖ ନିଦ୍ରା
ଶୟନୁ ବିରତ        ନ କରିବା ପାଇଁ
ଉନ୍ନିଦ୍ର ରହିଲି ଭଦ୍ରା ।

# ପ୍ରିୟା-୧୬

ପ୍ରିୟା ଭୂଜାଶ୍ଳେଷ ନିବିଡ ସେ ସ୍ପର୍ଶ
ପ୍ରଥମ ସେ ଅନୁଭବ
ପାଏ ନାହିଁ ଖୋଜି ଶବ୍ଦ ମୁହିଁ ଆଜି
କହିବା ନୁହେଁ ସମ୍ଭବ ।
କବରୀରେ ବନ୍ଧା ସେ ରଜନୀଗନ୍ଧା
ସୁଗନ୍ଧେ ତା ସୁଗନ୍ଧିତ
ହେଉଥିଲା କକ୍ଷ ଉନ୍ମୁକ୍ତ ଗବାକ୍ଷ
ସର୍ବାଙ୍ଗ ମୋ ପୁଲକିତ ।
ସତେ କେ ସୁନ୍ଦରୀ ସ୍ୱର୍ଗର ଅପ୍ସରୀ
ପଡିଛି କି କୋଳେ ଖସି
ମଣି ମୁକ୍ତା ହୀରା ଆଭୂଷଣେ ଭରା
ରୂପ ତା ଉଠେ ଝଲସି ।

## ପ୍ରିୟା-୧୭

ସ୍ୱର୍ଣ୍ଣିମ କମଳ          କାନ୍ତି ସମୋଜ୍ଜ୍ୱଳ
          ଦିଶେ ମୋ ପ୍ରିୟା ଆନନ
ମୁଖେ ଘର୍ମୋଦକ          ସତେକି ମୌକ୍ତିକ
          ରତ୍ନ ମଧ୍ୟେ ଶୋଭମାନ ।
ସତେକି ବସନ୍ତ          ହୋଇ ଆକର୍ଷିତ
          ମୋ ପ୍ରିୟାର ସର୍ବାଙ୍ଗରେ
କରିଅଛି ଫୁଲ          ସମସ୍ତ ମଞ୍ଜୁଳ
          କାନ୍ତି ଅତି ସରାଗରେ ।
ଯେତିକି ପରଖି          ଚାହିଁଲେ ନିରେଖି
          ଦିଶଇ ବେଶୀ ସୁନ୍ଦର
ମୋ ପ୍ରିୟାର ସରି          ନାହିଁ କେ ସୁନ୍ଦରୀ
          ଖୋଜିଲେ ଏ ତିନି ପୁର ।
ଥିଲି ମୁହିଁ ଏକା          ସଙ୍ଗେ ଦୈନ୍ୟ ଦକା
          ଧାଉଁଥିଲି ଧଇଁସଇଁ
ମିଳିଗଲା ସାଥୀ          ଏ ଜୀବନ ବୀଥି
          ଚାଲିବାକୁ ସାଥି ହୋଇ ।

✠

# ପ୍ରିୟା-୧୮

ଜୀବନର ରଙ୍ଗ        ଥିଲା ଫିକା ଫିକା
ଖାଲି ଦୁଃଖ ଓ ନିରାଶା
ଅତ୍ୟନ୍ତ ବିଷମ        ସେ ଜୀବନ ଗ୍ରୀଷ୍ମ
ନଥିଲା ସାହା ଭରସା ।
ହଜି ଯାଇଥିଲା        ଶୈଶବ କୈଶୋର
ଯଉବନେ ଥିଲା ପାଦ
ଯୌବନ ସୁଲଭ        ଯେତେ ଅନୁଭବ
ନଥିଲା ସେଥିରେ ସ୍ୱାଦ ।
ତୁମ ଆଗମନେ        ଆସିଲା ଜୀବନେ
ନୂଆ ଆଲୋକର ଆଶା
ଅସହ୍ୟ ଗ୍ରୀଷ୍ମ        କଲ ଉପଶମ
ଢାଳି ପ୍ରୀତି ବାରି ବର୍ଷା ।
ମଳୟ ବହିଲା        କୋଇଲି ଗାଇଲା
ଜୀବନ ରାଗିଣୀ ଗୀତି
ତନୁ ମନେ ପ୍ରିୟା        ଭରିଦେଲ ତୁମେ
ଅପୂର୍ବ ଆନନ୍ଦ ପ୍ରୀତି ।

# ପ୍ରିୟା-୧୯

ଆମ୍ବ ବଉଳିଲା          ବାସ ଚହଟିଲା
          କୋଇଲି ତୁମେ ବଉଳ
ମୋ ପ୍ରିୟା ଅଧର          ଦେଖି ମୁଁ ଅଧୀର
          ଚୁମ୍ବନ ଆଶେ ବ୍ୟାକୁଳ ।
କର୍ଣ୍ଣିକାର ପୁଷ୍ପ          ଦେଖାଏ ତା ରୂପ
          ସଗର୍ବେ ସମୀରେ ହଲି
ଦେଖି ଅଳିକୁଳ          ହୁଅନ୍ତି ବ୍ୟାକୁଳ
          ଉଡନ୍ତି ଗୁଞ୍ଜନ ତୋଳି ।
ତାଠାରୁ ସୁନ୍ଦର          ରୂପ ମୋ ପ୍ରିୟାର
          ତପ୍ତସ୍ୱର୍ଣ୍ଣ ସମ ବର୍ଣ୍ଣ
ମୁଁ ପାଗଳ ଅଳି          ପ୍ରିୟା ପାଶେ ଅଳି
          କରେ ଦେବାକୁ ଚୁମ୍ବନ ।

❋❋

# ପ୍ରିୟା-୨୦

ନଈ ସେପାରିରେ ରହୁଥିଲ ତୁମେ
ନଈ ଏପାରିରେ ମୁହିଁ
ସ୍ନାନକାଳେ ତୁମ ଅଙ୍ଗରାଗ ବାସ୍ନା
ଆସୁଥିଲା ଜଳେ ବହି ।
ସାରା ନଦୀ ଜଳ ମହକାଉଥିଲା
ତୁମ ଅଙ୍ଗରାଗ ବାସ୍ନା
ବାସ୍ନାରେ ବିଭୋର ମୀନ ଓ ମଗର
ଅଙ୍ଗେ ତାଙ୍କ କାମ ତୃଷ୍ଣା ।
ହଂସ ହଂସରାଳି ହେଉଥିଲେ ମେଳି
ସ୍ନାନକାଳେ ଚଉପାଶ
ଆନନ୍ଦରେ କେଳି କରୁଥିଲେ ମିଳି
ପାଇ ତୁମ ଅଙ୍ଗ ସ୍ପର୍ଶ ।
ତୁମେ ନାହଁ ତହିଁ ଅଛି ସେଇ ନଈ
ଅଛି ସେ ନଈର ଘାଟ
ମହକି ଉଠୁନି ତୁମ ଅଙ୍ଗରାଗେ
ଆଜି ସେ ଗାଧୁଆ ତୁଠ ।
ଝୁରୁଥିଲା ଦିନେ କାହ୍ନାର ବିହୁନେ
ବିରହେ ଯମୁନା ନଈ
ତୁମ ଗାଆଁ ନଈ ଝୁରେ ତୁମପାଇଁ
ନୟନୁ ନୀର ଗଡାଇ ।

# ପ୍ରିୟା-୨୧

ସରି ସରି ଆସେ　　ଚଇତି ମଳୟ
　　ବହେ ବଇଶାଖ ଝାଞ୍ଜି
ମୋ ପ୍ରିୟା ଆନନ　　ଦିଶଇ ମଳିନ
　　ବଇଶାଖ ଝାଞ୍ଜି ବାଜି ।
ସରସ ଚନ୍ଦନେ　　ଆଙ୍କିଛି ଯତନେ
　　ମୁଖେ ଚିତ୍ରଲେଖ ମାନ
ସୁକ୍ଷ୍ମ ଝିନ ବସ୍ତ୍ର　　ହୋଇ ପରିହିତ
　　ଦିଶଇ ଦେବୀ ସମାନ ।
ହସ୍ତେ ଶତଦଳ　　କୋମଳ କମଳ
　　ଛୁଏଁ ପ୍ରିୟା ଗଣ୍ଡଦେଶ
କମଳ ପରଶେ　　ମୁଖ କାନ୍ତି ଦିଶେ
　　ଅତି ସୁନ୍ଦର ସରସ ।

# ପ୍ରିୟା-୨୨

ଅୟସ ନନ୍ଦିନୀ        ବୟସ ଜାଲରେ
ରହିଥିଲ ହୋଇ ଛନ୍ଦି
ତୁମ ରୂପ ଥରେ        ମୋ ମନ ମୁକୁରେ
ହେଲା ଅକସ୍ମାତ୍ ବନ୍ଦୀ ।
ତୁମର ସେ ଚହାଣି        ବାରମ୍ବାର ହାଣି
କଲା ମୋତେ ପରିହାସ
ବାଧିଲା ମରମ        ତେଜିଲି ସରମ
ପିଇଲି ପୀରତି ରସ ।
ସପନେ ଆସିଲ        ଉଦାସୀ ନାଶିଲ
ପ୍ରେରଣାର ସ୍ରୋତସ୍ୱିନୀ
ଜୀବନର ପଥେ        ରହିଲ ମୋ ସାଥେ
ହୋଇ ଜୀବନ ସଙ୍ଗିନୀ ।
ଅମା ଅନ୍ଧକାର        ଧୀରେ ହେଲା ଦୂର
ହୋଇଲା ଚନ୍ଦିନୀ ରାତି
ଭାରାକ୍ରାନ୍ତ ମନ        ହୋଇଲା ପ୍ରସନ୍ନ
ଲଭି ତୁମ ଦିବ୍ୟ ପ୍ରୀତି ।

✠✠

# ପ୍ରିୟା-୨୩

ତୁମେ ଥିଲ
ମୁଁ ଥିଲି
ଥିଲା ଏଇ
ଜ୍ୟୋସ୍ନା ଭିଜା ରାତି,
ବଗୁଲିଆ ଜହ୍ନଟା
ବଉଦ ଫାଙ୍କରେ
ହସୁଥିଲା
ଆମ ଆଡେ ଦେଖି।
ତୁମର ସେ ଢଳ ଢଳ
ନୟନ ଯୁଗଳେ
କେତେ ଯେ ଅକୁହା କଥା,
ନିଶବ୍ଦରେ କହିଯାଉଥିଲେ
ପତୀକ୍ଷାର ବେଦନା ଓ ବ୍ୟଥା।
ରଜନୀଗନ୍ଧା ସେ
ତୁମ କୃଷ୍ଣ କବରୀର,
ବାସ୍ନାୟିତ କରୁଥିଲା
ଆମ ଚତୁଃପାର୍ଶ୍ୱ,
ରାତ୍ରିର ସେ ନିର୍ଜନତା
ଖୋଜୁଥିଲା ତୁମ
ନିବିଡ ଆଶ୍ଳେଷ।

**

# ପ୍ରିୟା-୨୪

ବିତାଇଛି କେତେ ଉନ୍ନୀଦ୍ର ରଜନୀ
ଅକୁହା ଆଜି ସେ କଥା
କହି ହୁଏ ନାହିଁ ସହି ହୁଏ ନାହିଁ
ଅନ୍ତର ତଳର ବ୍ୟଥା ।
ସଞ୍ଜ ଗଡିଗଲେ ରାତ୍ରି ଆସୁଥିଲା
ନଥିଲେ ଜହ୍ନ କି ତାରା
ଘନ ଅନ୍ଧକାରେ ବାଟ ନ ପାଇ ମୁଁ
ହୋଇଥିଲି ଦିଗହରା ।
ଯେତେଦିନ ପ୍ରିୟା ସଙ୍ଗେ ଥିବ ଠିଆ
ଆକାଶେ ଉଇଁବ ଜହ୍ନ
ହାତଛାଡି ଯେବେ ଚାଲିଯାଅ କେବେ
ଆସିବ ପୂର୍ବ ଦୁର୍ଦ୍ଦିନ ।
ମିଛ ଏ ସଂସାରେ ମରଣ ହିଁ ସତ୍ୟ
ଆସିଥାଏ ଅଜାଣତେ
ଯେତେଦିନ ବଞ୍ଚିଥିବି ପ୍ରିୟା ଏଠି
ତୁମ ହାତ ଥିବ ହାତେ ।



# ପ୍ରିୟା-୨୫

ପ୍ରେମ ଦୁନିଆରେ ପାଦ ଥାପି ଆମେ
ଗଢିଛେ ନୂଆ ସଂସାର
ପ୍ରୀତି ଭରା ଏହି ସଂସାର ଆମର
ସ୍ୱର୍ଗଠୁ ବଳି ସୁନ୍ଦର ।
ସ୍ୱର୍ଗର ସୁନ୍ଦର ପାରିଜାତ ପୁଷ୍ପ
ଶୋଭିବ ତୁମ ଗଭାରେ
ସୁନ୍ଦରୀ ଅପ୍ସରୀ ସରମରେ ଘାରି
ହେବେ ସେ ରୂପ ଆଭାରେ ।
ସୁନ୍ଦର ଆମ ଏ ଟିକି ଅଗଣାରେ
ଫୁଟିବ ସୁନ୍ଦର ଫୁଲ
ଫୁଲ ନୁହେଁ ଆମ ପ୍ରେମର ସନ୍ତକ
ଅତ୍ୟନ୍ତ ଅମୂଲ ମୂଲ ।
ପ୍ରଜାପତି ଭଳି ଉଡିବ ସେ ବୁଲି
ଆମ ଛୋଟ ଅଗଣାରେ
ଦେଖୁଥିବ ହସି ହୋଇ ମନେ ଖୁସି
ବସି ଫୁଲ ଝୁଲଣାରେ ।

ꘖꘖ

# ପ୍ରିୟା-୨୬

ନାରୀର ପୂର୍ଣ୍ଣତା        ବାତ୍ସଲ୍ୟ ମମତା
ଦେବ ନୂଆ ଅନୁଭବ
ଖୁସୀର ଝଲକ        ଓଠଧାରେ ପ୍ରିୟା
ହସ ହୋଇ ଝରୁଥିବ ।
କେତେବେଳେ ଭଗ୍ନୀ        ଜାୟା ବା ଜନନୀ
କେତେ ରୂପେ ଏହି ନାରୀ
କରଇ କରମ        ପାଳଇ ଧରମ
କର୍ତ୍ତବ୍ୟକୁ ଅନୁସରି ।
ଅପତ୍ୟ ପ୍ରାପତେ        ଭୁଲିବନି ମୋତେ
କରିବନି ପ୍ରେମେ ଊଣା
ମୋ ପ୍ରେମରେ ଊଣା        କମିଲେ ପାଉଣା
ମନ ହେବ ଆନମନା ।
ଶୁଣି ମୋର କଥା        ବୁଝନି ଅନ୍ୟଥା
କହୁ କହୁ କହି ଦେଲି
ପ୍ରେମରେ ତୁମର        ସଦା ମୁଁ ଆତୁର
ଭାବିବନି କିଛି ବୋଲି ।



# ପ୍ରିୟା-୨୭

ମୋ କଥା ଶୁଣିଲ        କଣେଇ ରହିଁଲ
        ମାରିଲ ମୁରୁକିହସା
କହିଲ କାହିଁକି        ହେଉଛ ବ୍ୟାକୁଳ
        କରିବକି ଲୋକହସା ।
ସନ୍ତାନ ପ୍ରେମରେ        ପତି ପ୍ରେମ କେବେ
        ହୋଇଥାଏ କ'ଣ ଊଣା
ଏପରି ହିସାବ କେ        କେବେ କରିଛି
        ନାହିଁ ତା ତୁମକୁ ଜଣା ।
ସନ୍ତାନ ନିମନ୍ତେ        ବାତ୍ସଲ୍ୟ ମମତା
        ପତି ପାଇଁ ରତି କ୍ରୀଡ଼ା
ଭାଇ ପାଇଁ ସ୍ନେହ        ଶରଧାର ଡୋରି
        ଗୁରୁଜନେ ଭକ୍ତି ଲୋଡ଼ା ।
ପ୍ରେମ ନୁହେଁ ପତି        ସଙ୍ଗେ ଖାଲି ରତି
        କରି କଟାଇବା ଦିନ
ପ୍ରେମ ପରା ଚିର        ଶାଶ୍ୱତ ସୁନ୍ଦର
        କିଣଇ ସବୁରି ମନ ।
ନିଜ କର୍ମଫଳେ        ଏ ସଂସାର କୋଳେ
        ଲଭିଛ ନାରୀ ଜନମ
କହିଲ ଏ ଜନ୍ମ        କରିବ ସାର୍ଥକ
        ପାଳି ନାରୀର ଧରମ ।

✠✠

# ପ୍ରିୟା-୨୮

ଜାଣେନାହିଁ ପ୍ରିୟା ନୀତି ଧର୍ମ କର୍ମ
ଜାଣେ ମୁଁ କେବଳ ପ୍ରେମ
ପ୍ରେମେ ଅବଗାହୀ ବଞ୍ଚିଅଛି ମୁହିଁ
ପ୍ରେମ ହିଁ ମୋହର ଧର୍ମ ।
ଝରା ଶେଫାଳୀର ବାସ୍ନାଗୋ ତୁମେ
ଯାଉଥିଲ ଝରି ଝରି
ଗନ୍ଧହୀନ ମୁଁ ଯେ ଲୋଟୁଥିଲି ତଳେ
ମୋ ପରେ ପଡିଲ ଝରି ।
ବାସ୍ନା ବିଜଡିତ କଲ ମୋତେ ପ୍ରିୟା
ପୁଲକିତ ମୋ ଶରୀର
ଅନୁଭବ ହେଲା ସତେକି ଅନଙ୍ଗ
ବିନ୍ଧିଅଛି ଶତ ଶର ।
ନିତି ଫୁଲ ସଞ୍ଜେ କମନୀୟ କୁଞ୍ଜେ
ହେଲା ତୁମ ସହ ଦେଖା
ପୀରତି ଆତୁରୀ ଆଗୋ ମୋ ଚତୁରୀ
କଲ ମୋତେ ପ୍ରେମରଙ୍କା ।
ରଚି ରଙ୍ଗ ରାସ ମନ କଲ ତୋଷ
ତୋଳିଲ ମଧୁର ଛନ୍ଦ
ସେ ଛନ୍ଦରେ ହଜି ପ୍ରୀତି ରସେ ଭିଜି
ହେଲି ତୁମ ପ୍ରେମେ ଅନ୍ଧ ।



# ପ୍ରିୟା-୨୯

ସାଜି ନବବଧୂ  ନେଇ ପ୍ରୀତି ମଧୁ
ଆସିଲ ମୋ ଅଗଣାରେ
ଶୁଷ୍କ ମୋ ଶରୀର  ଭିଜାଇଲ ପ୍ରିୟା
ତୁମ ପ୍ରୀତି ଝରଣାରେ ।

ଥୁଣ୍ଟା ଶାଖାରେ  ମୋ ପତ୍ର କଅଁଳିଲା
ଫୁଟିଲା ପ୍ରୀତି ବଉଳ
ନବ ଉଦ୍ଦୀପନା  ଜାଗିଲା ମୋ ମନେ
ହେଲି ମୁଁ ଚଳ ଚଞ୍ଚଳ ।

ଦୁର୍ଦ୍ଦିନର ଅମା  ଅନ୍ଧାର ହଟିଲା
ଉଇଁଲା ପୁନେଇଁ ଜହ୍ନ
ଜହ୍ନ ନୁହେଁ  ସେ ଯେ ତୁମ ଚନ୍ଦ୍ରମୁଖ
ଉଜ୍ଜ୍ୱଳ ଗଉର ବର୍ଣ୍ଣ ।

ହାତେ ପିନ୍ଧିଅଛ  ନାଲି ଚୁଡି ପ୍ରିୟା
ପାଦରେ ନାଲି ଅଳତା
ମଥାରେ ସିନ୍ଦୂର  ଘନ କୃଷ୍ଣ କେଶ
ନାଲି ବସ୍ତ୍ର ପରିହିତା ।

ଗଭାରେ ତୁମର     ରଜନୀଗନ୍ଧା ଗୋ
ମନମୋହିନୀ ମହକ
ତନୁ ତୁମ ହେମ     ଗଉର ବର୍ଣ୍ଣ ସେ
ରୂପରେ କେତେ ଚମକ ।

କିଏ ସେ ବିନ୍ଧାଣି     ଗଢ଼ିଛି ତୁମକୁ
ଏପରି ଯତନ କରି
ଦେଖିଦେଲେ ଆଖି     ଯାଉଅଛି ଲାଖି
ନେଉଛ ମନକୁ ହରି ।

卐卐

# ପ୍ରିୟା-୩୦

କହି ତ ନଥିଲି ମିଠା କଥା କେବେ
ମୋହିବାକୁ ତୁମ ମନ
ନଥିଲା ସେଭଳି ଧନ ଦଉଲତ
ଅବା ମୋର ବଡପଣ ।

କାହିଁକି କିପରି କଅଣ ଏପରି
ଟାଣିନେଲା ତୁମ ମନ
ବାଛିନେଲ ସାଥୀ ରୂପେ ଜୀବନର
ମୋତେ ତୁମେ ଚିରଦିନ ।

ନଥିଲା ସୁନ୍ଦର ରୂପ ଯଉବନ
ଆକର୍ଷିବା ପାଇଁ ମନ
କି ଗୁଣେ ମୋହିତ ହୋଇ ଆକର୍ଷିତ
ହେଲ ଜାଣିବା କଠିନ ।

ତୁମେ କି ଜାଣିଛ ପ୍ରିୟେ ମୋର ସେହି
ଦୁଃଖ ବେଦନାର ଦିନ
ମାଟିକାନ୍ଥ ଘେରା ଘର ଥିଲା ସିନା
ନଥିଲା ଖଳ ମଥାନ ।

ବେଦନା ଭରା ସେ ଜୀବନେ ମୋହର
ଆସିନି ବସନ୍ତ କେବେ
ଝଡିଯାଇଥିବା ପତ୍ର ସବୁ ମୋର
କଅଁଳି ବି ନାହିଁ ଏବେ ।

ତୁମକୁ ପାଇ ମୁଁ ସବୁ ପାଇଗଲି
ପାଇଲି ଜୀବନେ ଆଶା
ମଉଳା ସପନ ପାଇଲେ ଜୀବନ
ମନେ ମୋ ପ୍ରୀତିର ଭାଷା ।

କଣ୍ଠରୁ ତୁମର ଝରିଲା ଷଡଜ
ଆଦି ଯେତେ ସପ୍ତ ସ୍ୱର
କେତେବେଳେ ତୀବ୍ର ଅବା ସେ କୋମଳ
ମୋହିଲା ମନ ମୋହର ।

ଗାଇଗଲ କେତେ ପ୍ରୀତିର ରାଗିଣୀ
ହସି ଉଠିଲା ସଂସାର
ତମେ କଲେ ରୋଷ ହେବ ସର୍ବନାଶ
ଜୀବନ ହେବ ଅସାର ।

ତୁମେ ସଙ୍ଗେ ଥିଲେ ସଞ୍ଜ ବା ସକାଳ
ସବୁ ମୋ ପାଇଁ ସମାନ
ଆକାଶରେ ଏକ ସଙ୍ଗେ ରହିଥିବେ
ସୂର୍ଯ୍ୟ ତାରା ଆଉ ଜହ୍ନ ।

✠✠

# ପ୍ରିୟା-୩୧

ପ୍ରାରବ୍ଧର ଫଳ ଥିଲା ଦୁଃଖ କାଳ
ଭୋଗିଛି ଶୈଶବ କୈଶୋର ମୋର
ତୁମ ଆଗମନେ ଆସିଲା ଜୀବନେ
ଖୁସିର ପ୍ରଥମ କ୍ଷୀଣ ଲହର ।

ଜୀବନର ଧାରା ହୋଇଲା ନିଆରା
ଅନ୍ତରେ ଜାଗିଲା ଆତ୍ମ ବିଶ୍ୱାସ
ପଙ୍ଗୁ ହୋଇ ଗିରି ଲଘିବାକୁ ମୋର
ତନୁମନେ ଭରିଗଲା ସାହସ ।

କେବେ କ'ଣ ପ୍ରୀତି ଜୀବନର ରୀତି
ବଦଳାଇ ଦିଏ ଏପରି ଭାବେ
ଜାଣି ମୁଁ ନଥିଲି ଶୁଣି ମୁଁ ନଥିଲି
ଅନୁଭବ ହେଲା ପ୍ରଥମେ ଏବେ ।

ଆଙ୍କିବିନି ଛବି ଅତୀତକୁ ଭାବି
ସ୍ଥିର କଲି ପ୍ରିୟା ତୁମକୁ ପାଇ
ପ୍ରୀତି ରସେ ଭିଜି ତୁମ ସହ ମଜି
ବିତାଇବି ବାକି ଜୀବନ ମୁହିଁ ।



# ପ୍ରିୟା-୩୨

ଅନ୍ଧାରକୁ ଦିନେ ପାଇଥିଲି ଭଲ
ଛାଡିଦେଇ ଗଲା ମୋତେ
କହିଗଲା ଆଉ ଫେରିବନି ଯଦି
ଆଲୋକ ରହିବ ସାଥେ ।

ଆଲୋକ ସେ ନୁହଁ ମୋ ପ୍ରିୟାର ମୁହଁ
ଉଜ୍ଜ୍ୱଳ ଜ୍ୟୋତିଷ୍କ ସମ
ବିକିରଣ କରୁ ଥିଲା ଜ୍ୟୋତିରାଶି
ଚତୁର୍ଦ୍ଦିଗେ ଅନୁପମ ।

ତା ଅସରା ହସ ପସରାରୁ ଝରୁ
ଥିଲା ପ୍ରୀତି ମୁକ୍ତା ଫୁଲ
ଫୁଲ ନୁହେଁ ସେତ ମୋ ପ୍ରିୟାର ମନ
ମୋ ପାଇଁ ଅମୂଲ ମୂଲ ।

ମନରେ ମନକୁ ମିଶେଇ ଦେଇଛୁ
ହୋଇଅଛୁ ଏକାକାର
ଆସୁ ଯେତେ ବାଧା ବିଘ୍ନ ଏ ଜୀବନେ
ନାହିଁ ବି ଟିକିଏ ଡର ।

ଚାହୁଁନାହୁଁ ଆମେ     ରୁଦ୍ଧ ବାତାୟନ
ବନ୍ଦ କକ୍ଷ ମଧ୍ୟେ ବସି
ହଜାଇ ଦେବାକୁ     ଅନ୍ଧାର ଗଳିରେ
ଜୀବନର ସୁଖରାଶି ।

ସମାଜର ଯେତେ     କୁରୀତି କୁନୀତି
ବାଧା ଓ ବନ୍ଧନ ଖୋଲି
ମୁକ୍ତ ବିହଙ୍ଗମ     ସମ ଉଡିବାକୁ
ଚାହୁଁ ଆମେ ଡେଣା ମେଲି ।

ହସି ହସି ଆମେ     ବଞ୍ଚିବାକୁ ଚାହୁଁ
ବାକି ଏ ଜୀବନ ଆମ
ଭରିବାକୁ ଚାହୁଁ     ଆମ ଏ ଜୀବନେ
ଅତୁଟ ଅମର ପ୍ରେମ ।

✠✠

# ପ୍ରିୟା-୩୩

ଉଚ୍ଚ ଅଭିଳାଷ ଜଗାଏ ବିଶ୍ୱାସ
ଆଗକୁ ବଢ଼ିବା ପାଇଁ
ଉଦାସୀନ ମନ କରେ ହୀନିମାନ
ପଛକୁ ନିଏ ଫେରାଇ ।

ମୋ ମନେ ଭରିଛ ଉଚ୍ଚ ଅଭିଳାଷ
ଜନ୍ମିଛି ଆତ୍ମବିଶ୍ୱାସ
ଦେଖିନାହିଁ ଆଉ ପଛକୁ ଫେରି ମୁଁ
ଅତୀତର ଶୋକୋଚ୍ଛ୍ୱାସ ।

ତୁମ ମିଠା କଥା ହରିନିଏ ବ୍ୟଥା
ଭୁଲିଯାଏ ସବୁ ଦୁଃଖ
ସବୁ ରାଗ ରୋଷ ହୁଏ ପ୍ରଶମିତ
ଦେଖିଦେଲେ ତୁମ ମୁଖ ।

ରୂପ ଯଉବନ ଅଢ଼େଇଟା ଦିନ
ଆଜି ଅଛି କାଲି ନାହିଁ
ଗୁଣ ଥାଏ ଯାର ସେ ପାଏ ଆଦର
ଯେତେଦିନ ବଞ୍ଚିଥାଇ ।

ଦେବୀ କି ମାନବୀ ପାରେ ନାହିଁ ଭାବି
ଥିଲ ପୂର୍ବ ଜନ୍ମ ସାଥୀ
ମିଳିଗଲ ମୋତେ ଏ ଜନମେ ସାଥେ
ଭାଗ୍ୟର ଏ କରାମତି ।

ପାଇଛି ମୁଁ ଭଲ ପାଉଥିବି ଭଲ
ଯେତେଦିନ ଥିବି ବଞ୍ଚି
ମଉଳି ଯାଉ ସେ ରୂପ ଯଉବନ
ଯାଏ ଆସେ ନାହିଁ କିଛି ।

✠✠

# ପ୍ରିୟା-୩୪

ସଂସାରେ କାହାରି ନୁହେଁ ନିଜ ମନ
ଜାଣିଛ ତ ତୁମେ ପ୍ରିୟା
ଜୀବନ ବାଥିରେ ଆସିପାରେ କେତେ
ଅସୁବିଧା ନୂଆ ନୂଆ ।

ଡରିଯାଏ ଯିଏ ହାରିଯାଏ ସିଏ
ଲକ୍ଷ୍ୟ ରହିଯାଏ ଅଧା
ତୁମେ ସଙ୍ଗେ ଥିଲେ ପୂର୍ଣ୍ଣ ହେବ ଲକ୍ଷ୍ୟ
ଆସୁ ଯେତେ ବିଘ୍ନ ବାଧା ।

ଦୁଃଖ ସୁଖ ସମ ଭାବେ ଯେ ଭାବଇ
ସ୍ଥିରଥାଏ ତା ହୃଦୟ
ଦୁଃଖରେ ଉଦ୍‌ବିଗ୍ନ ହୁଏନି ତା ମନ
ସୁଖେ ସେ ବିଗତସ୍ପୃହ ।

ତୁମକୁ ପାଇ ମୋ ଜୀବନର ଗୀତି
ନୂତନ ରାଗିଣୀ ଗାଏ
ନୂତନ ସପନ ନବ ଉନ୍ମାଦନା
ନୂଆ କିଛି ଭାବିଯାଏ ।

❋❋

# ପ୍ରିୟା-୩୫

ଜନମ ମରଣ	ନୁହେଁ କା ଅଧୀନ
	ସେ ଡୋରୀ ଅଦୃଶ୍ୟ ହାତେ
ହେଲେ ଏ ଜୀବନ	ଜିଇବା କିପରି
	ରହିଛି ଆମରି ହାତେ ।

ଯେତେଦିନ ରହି	ଥିବା ଏ ସଂସାରେ
	ପ୍ରେମେ ବିତିଯାଉ ଦିନ
ପ୍ରେମ ବନ୍ଧନରେ	ବାନ୍ଧି ହୋଇଗଲେ
	ଶତ୍ରୁ ବି ଆପଣା ଜନ ।

ପରକୁ ଆପଣା	କରିବାର ଗୁଣ
	ଶିଖିଲି ତୁମଠୁ ପ୍ରିୟା
ତୁମେ ବୋଲିଦେଲ	ପ୍ରେମ ରଙ୍ଗ ଅଙ୍ଗେ
	ହେଲା ଭାବ ଦିଆନିଆ ।

ଭାବ ଦିଆ ନିଆ        ହୋଇଗଲେ ଥରେ
ସହଜ ହୁଏ ମିଳନ
ମିଳନରୁ ମହା        ମିଳନ ଘଟଇ
ଜୀବନ ହୁଅଇ ଧନ୍ୟ ।

ଆସ ଥରେ ପ୍ରିୟା        ମିଶିଯିବା ଆମେ
ହୋଇଯିବା ଏକାକାର
ଜୀବନର ପଥ        ଆଲୋକିତ ହେବ
ହଟିଯିବ ଅନ୍ଧକାର ।

❖❖

# ପ୍ରିୟା-୩୬

ତୋଳିବନି କେବେ    ବିରହର ସୁର
ଏ ଜୀବନ ଚଲାପଥେ
ଚହେଁ ନାହିଁ ମନ    ଶୁଣିବାକୁ ପୁନଃ
ହଜାଇଛି ଯା ଅତୀତେ ।

ତୁମେ ଛାଡିଗଲେ    ଶୁଖିବ ବସନ୍ତ
ସବୁ ପତ୍ର ଯିବ ଝଡି
ନିଃସଙ୍ଗତାର ଏ    ବହଳିଆ ଖରା
ଉତ୍ତାପରେ ଯିବି ପୋଡି ।

ଜାଳିବ ଜୀବନ    କରି ହୀନିମାନ
ବଞ୍ଚିବାର ସବୁ ମୋହ
ସବୁ ଛାଡି ଦେବି    ଅପେକ୍ଷା କରିବି
ଭେଟିବାକୁ ତୁମ ସହ ।

ତୁମ ସହ ପ୍ରିୟା    ରହିବାକୁ ଚହେଁ
ଜନ୍ମ ଜନ୍ମାନ୍ତର ପାଇଁ
ତୁମେ ମୋ ଜୀବନ    ତୁମେ ମୋ ସପନ
ତୁମ ବିନା ଆନ ନାହିଁ ।

❋❋

# ପ୍ରିୟା-୩୭

ସମୟ ସ୍ରୋତରେ        ବୟସ ବଢୁଛି
ଯଉବନ ଯିବ ଚାଲି
କାଳ ବୈଶାଖୀ        ଝାଞ୍ଜି ପବନରେ
ବସନ୍ତ ବି ଯିବ ଭୁଲି ।

ସେ ସମୟେ ପ୍ରିୟା        ହେବ ମୋର ସାହା
ବୁଝିବ ମୋ ସୁଖ ଦୁଃଖ
ହାତ ଛାଡି ଯଦି        ଚାଲିଯାଅ ପ୍ରିୟା
ଜୀବନ ହୋଇବ ରୁକ୍ଷ ।

ସାଥୀ ରୂପେ ପ୍ରିୟା        ପାଇ ମୁ ତୁମକୁ
ହୋଇଛି ଜୀବନ ଧନ୍ୟ
ଜାଣନି ମୁଁ ଏହା        କର୍ମଫଳ ଅବା
କେଉଁ ଜନମର ପୁଣ୍ୟ ।

ତୁମ ସେ ମନକୁ        ସାଇତି ରଖିଛି
ହୃଦୟ କନ୍ଦରେ ମୋର
ସୁର ତାଳ ଛନ୍ଦ        ଭରି ମୁଁ ଦେଇଛି
ଶୁଣୁଥିବ ସାତ ସୁର ।



# ପ୍ରିୟା-୩୮

ତୁମେ ସକାଳର ସେବତୀ ଗୋ ପ୍ରିୟେ
ରାତ୍ରିର ରଜନୀଗନ୍ଧା
ତୁମକୁ ଭୁଲିବା ସମ୍ଭବ କି କେବେ
ମୋ ଜୀବନ ସହ ଛନ୍ଦା ।

ନିଦାଘ ପରଶେ କୃଷ୍ଣଚୂଡ଼ା ହସେ
ଦେଖାଇ ତା ରୂପ ଶୋଭା
ମାନେ ନାହିଁ ଖରା ଫୁଟି ଦିଶେ ତୋରା
କି ସୁନ୍ଦର ମନଲୋଭା ।

ତୁମେ ସେହିପରି ଯାଇନାହଁ ଡରି
ଛୁଇଁ ମୋ ଦୁଃଖର ତାତି
ହସି ହସି ଆସି ଦେଇଛ ପରଷି
ଶୀତଳ ମଧୁର ପ୍ରୀତି ।

ତୁମ ବିନା ଏହି ସଂସାରେ ବଞ୍ଚିବା
ଭାବିନି ତ କେବେ ପ୍ରିୟା
ନିସଙ୍ଗ ଜୀବନ ମରଣ ସମାନ
ଭାବିଲେ ଥରଇ ହିଆ ।

# ପ୍ରିୟା–୩୯

ପୀରତି ପଖଳା ଗୋରା ମୁହଁ ତୁମ
ନିରେଖିବାକୁ ମୋ ମନ
ମୁହଁ ନୁହେଁ ସେ ତ ଅଗଣାରେ ମୋର
ଉଇଁଛି ପୂନେଇଁ ଜହ୍ନ ।

ଇଚ୍ଛାହୁଏ ପ୍ରିୟା କୋଳେ ମଥା ରଖି
ସେ ଜହ୍ନକୁ ଛୁଇଁ ଛୁଇଁ
ସେ ମୁଖ ନିରେଖି ପ୍ରୀତି ମଧୁ ଚାଖି
ଯାଆନ୍ତି ନିଦରେ ଶୋଇ ।

ସେ ଜହ୍ନରୁ ଜ୍ୟୋସ୍ନା ଝରି ଯାଉଥାନ୍ତା
ସର୍ବାଙ୍ଗ ମୋ ସିକ୍ତ କରି
ଶୋଇ ଦେଖୁଥାନ୍ତି ସପନେ ତୁମକୁ
ମୋ ବାହୁ ବନ୍ଧନେ ଧରି ।

✠✠

# ପ୍ରିୟା-୪୦

ଗୋଧୂଳି ଲଗନେ ସାଥୀଙ୍କ ଗହଣେ
ଗାଆଁ ଦାଣ୍ଡ ଧୂଳିଖେଳେ
ମିଛି ମିଛିକିଆ ବର ଓ କନିଆ
ସାଜିଥିବ ବେଳେ ବେଳେ ।

ଧୂଳି ଭାତ ଧୂଳି ତରକାରି ସଙ୍ଗେ
ଧୂଳି ଖଟା ପିଠା ଖିରି
ମିଛି ମିଛିକିଆ ବରଯାତ୍ରୀମାନେ
ଖାଇଥିବେ ପେଟ ଭରି ।

ପିନ୍ଧି ପାଟଶାଢୀ ମୁଣ୍ଡରେ ଓଢଣି
ଦେଇ ସାଜିଥିବ ବଧୂ
କପାଳରେ ତୁମ ଝଟକୁ ଥିବ ଗୋ
ଟୋପି ଚନ୍ଦନର ବିନ୍ଦୁ ।

ସେଦିନର ସେହି ମିଛ ବର କଥା
ରଖିଛ କି ପ୍ରିୟା ମନେ
ତା ରୂପ ସହିତ ମୋ ରୂପ ତୁଳନା
କରିଛ କି କେବେ ଦିନେ ?

ଭୁଲି ପିଲାଦିନ ଦେଇଦେଲ ମନ
ପ୍ରେମ ବନ୍ଧନର ବାନ୍ଧି
ସାତ ଜନ୍ମ ପାଇଁ ଜୀବନକୁ ପ୍ରିୟା
ଦେଲ ମୋ ଜୀବନେ ଛନ୍ଦି ।

# ପ୍ରିୟା-୪୧

ପ୍ରେମ ପ୍ରଦୀପରେ ଆଲୋକିତ କରି
ହୃଦୟ ମନ୍ଦିର ମୋର
ସାତ ଜନ୍ମ ପାଇଁ ବାନ୍ଧିଦେଲ ପ୍ରିୟା
ପ୍ରେମ ବନ୍ଧନେ ତୁମର ।

ତୁମେ ଭୁଲିବନ ମୁଁ ବି ଭୁଲିବିନି
ଏ ପ୍ରେମର ଗୀତିକଥା
ଜୀବନର ପ୍ରତି ଛତ୍ରେ ଛତ୍ରେ ଆମେ
ଲେଖିଛେ ପ୍ରେମର ଗାଥା ।

ମାନ ଅଭିମାନ କରିନ ତ କେବେ
ମାଗିନ ବି କିଛି କେବେ
ଏତିକି ରହିଁଛ ମୋ ମୁହଁରେ ହସ
ନଜରେ ଆସିବି ଯେବେ ।

ପାଶୁ ମୋ ଅନ୍ତର ହୋଇନାହଁ କେବେ
ଦେଇଛ ସାହା ଭରସା
ଏକାଠି ଜଳିବ ଜୁଇ ଆମ ବୋଧେ
ମନେ ଏହି ଅଭିଳାଷା ।

**

# ପ୍ରିୟା-୪୨

ତୁମେ ଅଳିଅଳୀ          ରାଜଜେମା ପ୍ରିୟା
ମୁଁ ଯେ ଗାଆଁ ଦାଣ୍ଡ ଧୂଳି
ସେ ଦାଣ୍ଡର ଧୂଳି          କଲା କେଉଁ ଗୁଣି
ଅଙ୍ଗେ ତୁମ ଦେଲ ବୋଳି ।

ଛାଡ଼ିଲ ପ୍ରାସାଦ          ବରିଲ ଦୁଃଖଦ
ପର୍ଣ୍ଣ କୁଟୀରକୁ ମୋର
କି ବାସ୍ନା ଥିଲା ସେ          ପର୍ଣ୍ଣ କୁଟୀରରେ
ମୋହିଲା ମନ ତୁମର ।

ଶ୍ରୀୟା ଚଣ୍ଡାଳୁଣୀ          ଘରେ ସାଆନ୍ତାଣୀ
ଲକ୍ଷ୍ମୀ ବିଜେ କଲା ପରି
ତୁମେ ବିଜେକଲ          ମୋ ପର୍ଣ୍ଣ କୁଟୀରେ
ଧନଧାନ୍ୟେ ଗଲା ଭରି ।

ତୁଟିଲା ତମସା          ବାହୁଡ଼ିଲା ଉଷା
ଉଇଁଲା ନବୀନ ସୂର୍ଯ୍ୟ
ନୂତନ ଆଲୋକ          ଭରିଦେଲା ମନେ
ଅପୂର୍ବ ସାହସ ଧୈର୍ଯ୍ୟ ।



# ପ୍ରିୟା-୪୩

ଲୋଡା ନାହିଁ ମୋର ସରଗର ସୁଖ
ତୁମେ ଥିଲେ ପ୍ରିୟା ପାଶେ
ତୁମ ଓଠଧାରେ ମୋ ମାଟି ବୈକୁଣ୍ଠ
ଖିଲି ଖିଲି ହୋଇ ହସେ ।

ଏଇ ଘରେ ଦିନେ ନିରବେ ନିର୍ଜନେ
ଭାବିଛି ଅନେକ କଥା
କଥା ସେ ନଥିଲା ଅତ୍ୟନ୍ତ ତତଲା
ମରମ ତଳର ବ୍ୟଥା ।

ଦୁଃଖର କାହାଣୀ ପାରେନା ସେ ଜାଣି
ନାହିଁ ଯା'ର ଅନୁଭୂତି
ମିଛ ଆଶ୍ୱାସନା ଦିଅଇ ଯାତନା
କହିହୁଏ ନାହିଁ କିଛି ।

ଚଉଦିଗ ମୋର ଥିଲା ଅନ୍ଧକାର
ଅନ୍ଧାର ହିଁ ଥିଲା ସାଥୀ
ସଜେଇ ଦୀପାଳି ଅନ୍ଧାରକୁ ଠେଲି
ଆସି ଜଗାଇଲ ପ୍ରୀତି ।

❋❋

# ପ୍ରିୟା-୪୪

ଊଷର ମନର ଧୂସର ଭୂଇଁରେ
ଛୁଟାଇ ପ୍ରୀତିର ବନ୍ୟା
ସୃଷ୍ଟିକଲ ପ୍ରିୟା ମୋ ମନରେ ନୂଆ
ସୃଜନର ସମ୍ଭାବନା ।

ବହିଲା ମଳୟ ନବ କିଶଳୟ
ପାଦପେ ହେଲେ ମଣ୍ଡିତ
ମୋ ମନ ଅଙ୍ଗନେ କେତେ ନୂଆ ନୂଆ
ସ୍ୱପ୍ନ ସବୁ ଉପଗତ ।

ଯାଦୁକରୀ ତୁମ ପରଶରେ ପ୍ରିୟା
ପାଇ ନୂଆ ଅନୁଭବ
ସୁପ୍ତ ଏ ମୋ ମନ ଜାଗ୍ରତ ହୋଇଲା
ଭାବିଲି ସବୁ ସମ୍ଭବ ।

✠✠

# ପ୍ରିୟା-୪୫

ନିତି ସଞ୍ଜବେଳେ ସନ୍ଧ୍ୟା ଦୀପ ଜାଳି
ଚଉରା ମୂଳରେ ବସି
ଶୁଭ ମନାସୁଛ ଜୀବନରେ ଆମ
ରହିଥାଉ ସଦା ଖୁସି ।

ତୁମ ପୁଣ୍ୟ ବଳେ ହସ ଖୁସି ଖେଳେ
ଛୋଟ ଆମ ଏ ସଂସାରେ
ସନ୍ତାନ ସନ୍ତତି ଧନ ବା ସଂପତ୍ତି
ଦେଇଅଛନ୍ତି ଠାକୁରେ ।

ପ୍ରେମ ବୁଝେନାହିଁ ଅଭାବ କଷଣ
ଧନ ଅବା ବଡପଣ
ପ୍ରେମ ହୋଇଗଲେ ମନ ରହେଁ ପ୍ରିୟା
କେବଳ ଗୋଟିଏ ମନ ।

ତୁମେ ବି ପାଇଛ  ମୁଁ ମଧ ପାଇଛି
ଚାହୁଁଥିଲା ଯାହା ମନ
ଆଉ ମୋର କିଛି  ଲୋଡାନାହିଁ ପ୍ରିୟା
ତୁମେ ମୋ ଅମୂଲ୍ୟ ଧନ ।

ଅସରା ପ୍ରୀତିର  ପସରା ମେଲେଇ
ବସିଅଛ ତୁମେ ପ୍ରିୟା
ପ୍ରୀତିର ଗ୍ରାହକ  ତୁମ ପାଶେ ସଦା
ରହିଥିବି ମୁହିଁ ଠିଆ ।

ꕥꕥ

## ପ୍ରିୟା-୪୬

ସମୟ ଗଡିଛି ବୟସ ବଢିଛି
ନାହିଁ ସେ ରୂପ ଯୌବନ
ଉଦ୍ଦାମ ଉନ୍ମତ୍ତ ଭାବ ପ୍ରଶମିତ
ସ୍ଥିର ଏ ଚଞ୍ଚଳ ମନ।

ଜଳି ଜଳି ଯାଏ ଜୀବନ ସଳିତା
ସରି ସରି ଆସେ ଆୟୁ
ବିନା ସଂକେତରେ କେଉଁ ମୁହୂର୍ତ୍ତରେ
ଉଡିଯିବ ପ୍ରାଣବାୟୁ।

ଛାଡି ଏହି ଘଟ ହୋଇବ ପ୍ରକଟ
ଅନ୍ୟ କେଉଁ ଘଟେ ଯାଇ
ତୁମେ ଥିବ ପ୍ରିୟା ମୁଁ ବି ଥିବି ପ୍ରିୟା
କେ କା'ରେ ଚିହ୍ନିବା ନାହିଁ।

ଶରୀର ଅନିତ୍ୟ ଚିରନ୍ତନ ସତ୍ୟ
ଜାଣି ବି ତୁମକୁ ପ୍ରିୟା
ଛାଡି ପାରୁନାହିଁ ଭୁଲି ପାରୁ ନାହିଁ
ଏ ତ ସଂସାରର ମାୟା।

# ପ୍ରିୟା-୪୭

ସଂସାର ଜଞ୍ଜାଳେ ଯେତେ ଝଡଝଞ୍ଜା
ସବୁତ ଯାଇଛ ସହି
ଦିନେ ହେଲେ ପ୍ରିୟା ନିଜ ପାଇଁ କିଛି
ଲୋଡ଼ିନ ମାଗିବା ପାଇ ।

ପ୍ରିୟ ପରିଜନ ଆତ୍ମୀୟ ସ୍ୱଜନ
ସଭିଙ୍କ ନେଇଛ ମନ
କହି ମିଠା କଥା ବୁଝି ତାଙ୍କ ବ୍ୟଥା
ହୋଇଛ ପ୍ରିୟ ଭାଜନ ।

ତୁମ ପାଇଁ ପ୍ରିୟା ସରଗ ନରକ
ମରତ ମୋ ଏଇଠାରେ
ଏଇ ଘର ମୋର ବଇକୁଣ୍ଠପୁର
ଶେଷ ନିଶ୍ୱାସ ଏଠାରେ ।

✠✠

# ପ୍ରିୟା-୪୮

କେତେ ଅସଜଡା ସ୍ମୃତିର ପାଖୁଡା
ପଡିଛନ୍ତି ଇତସ୍ତତଃ
ସାଉଁଟି ସଜାଡି ରଖିବା ପାଇଁକି
ମନହୁଏ ବିଚଳିତ ।

କିଏ କହେ ଦୁଃଖ ଦୁର୍ଦ୍ଦିନ କାହାଣୀ
କେ ଗାଏ ସୁଖ ରାଗିଣୀ
କେ ଦେଖାଏ ଦୃଶ୍ୟ ପ୍ରୀତି ରଙ୍ଗ ରାସ
କେ ଶୁଣାଏ ବ୍ୟଙ୍ଗ ବାଣୀ ।

ସବୁ ସ୍ମୃତି ମୋର ଜୀବନ ଗୀତିର
ଗୋଟିଏ ଗୋଟିଏ ସୁର
କାହାକୁ ରଖିବି କାହାକୁ ଭୁଲିବି
କରିପାରେ ନାହିଁ ସ୍ଥିର ।

କୁହ ଆଜି ପ୍ରିୟା ମନ ମୋର କିଆଁ
ହୁଏ ଏତେ ଆନ୍ଦୋଳିତ
ଜୀବନର ଶେଷ ସୁର ଶୁଣିବାର
ବେଳ କ'ଣ ଉପନୀତ ?

❋❋

## ପ୍ରିୟା-୪୯

ବିତିଯାଏ ଦିନ        ବୟସର ଚିହ୍ନ
    ରହିଯାଏ ଏ ଶରୀରେ
ଅଇନାରେ ଦେଖି        ସ୍ୱ ଅଙ୍ଗ ପରଖି
    ଦେଖି ନାହେଁ ଆମେ ଥରେ ।

ଥିଲ ତୁମେ କଳି        ଯାଇଛ ବଦଳି
    ବଦଳିଛି ରଙ୍ଗ ରୂପ
ତୁମ ଚଉପାଶେ        ମଧୁପାନ ଆଶେ
    ଉଡୁନି ହୋଇ ମଧୁପ ।

ଅଙ୍ଗ ମୋ ଶିଥିଳ        କେଶ ମୋ ଧବଳ
    ଗଳିତ ମୋ ଦନ୍ତ ପଂକ୍ତି
ଲୋଳିତ ଏ ଚର୍ମ        ନାହିଁ ଆକର୍ଷଣ
    କ୍ଷୀଣ ମୋର ଦୃଷ୍ଟି ଶକ୍ତି ।

ରୂପ ଯଉବନ        ଅଢେଇଟା ଦିନ
    କହିଥିଲି ପ୍ରିୟା ଦିନେ
ଆଜି ତା ପ୍ରଭାବ        ହୁଏ ଅନୁଭବ
    ଜାଣୁଥିବ ମନେ ମନେ ।

✲✲

## ପ୍ରିୟା -୫୦

ମନେପଡେ ତୁମ    ନାଲି ଓଠଧାରେ
ପୀରତି ପଖଳା ହସ
ଝରି ପଡୁଥିଲା    ତାରାଫୁଲ ପରି
ଦେଇ ପ୍ରୀତିର ପରଶ ।

ଫଗୁଣର ହୋଲି    ରଙ୍ଗ ଖେଳ ପ୍ରିୟା
ପାଶୋରି ଯାଇନି ମନୁ
ନ ମାନି ମୋ ମନା    ସଜେଇଲ କାହ୍ନା
ବେଶେ ରଙ୍ଗାଇ ମୋ ତନୁ ।

ଅତୀତର ସୁଖ    ଭାଳି ମନେ ଦୁଃଖ
କରିବାନି ଆଉ ପ୍ରିୟା
ସମୟ ସ୍ରୋତରେ    ବଦଳୁଛି ଯାହା
ରୋକି କେ ପାରିବ ତାହା ?

✠✠

# ପ୍ରିୟା-୫୧

ପ୍ରେମରେ ବତୁରା ମନକୁ ମୋ ପ୍ରିୟା
ହୃଦୟେ ଦେଇଛ ସ୍ଥାନ
କାଳେ କିଏ ତାକୁ ଚୋରି କରିନେବ
ରଖିଛ ତା'ଠାରେ ଧ୍ୟାନ ।

ବିତିଛି ସେ ଦିନ ହଜିଛି ଯୌବନ
ଅଙ୍ଗେ ନାହିଁ ଆକର୍ଷଣ
ତଥାପି ସନ୍ଦେହ କରଇ ଅଥୟ
ଅସ୍ଥିର ମୋ ପ୍ରିୟା ମନ ।

ଚଞ୍ଚଳ ଏ ମନ ଚଉଦ ଭୁବନ
ଘୁରିଆସେ ମୁହୂର୍ତ୍ତରେ
କେବଳ ସଂଯମୀ କରେ ଅନୁଗାମୀ
ମନକୁ ତା ଆୟତ୍ତରେ ।

ପଞ୍ଚଭୂତେ ଗଢା ଆମ ଏ ଶରୀର
ମିଶିଯିବ ପଞ୍ଚଭୂତେ
ନଶ୍ୱର ଏ ଦେହ ପ୍ରତି ଏତେ ମୋହ
ରଖ କିମ୍ପା ପ୍ରିୟେ ଏତେ ।

# ପ୍ରିୟା-୫୨

ସମୟ ବୀଥିରେ        ମାନସପଟରେ
        ସ୍ମୃତି ସବୁ ଉଜ୍ଜୀବିତ
ପୁରୁଣା ଚିଠିର        ରେଖାଙ୍କିତ ପଂକ୍ତି
        ପଢ଼ି ତନୁ ରୋମାଞ୍ଚିତ ।

ଶବ୍ଦ ସବୁ ଥିଲେ        ପ୍ରୀତିର ଗୋଲାପ
        ପାଖୁଡ଼ା ପରି ଜୀବନ୍ତ
ନିଶବ୍ଦରେ ଗାଇ        ଯାଉଥିଲେ ଆମ
        ପ୍ରେମ ଗାଥାର ମୁହୂର୍ତ୍ତ ।

ମନେ ଥିଲା ମୋର        ଅନେକ ଉତ୍କଣ୍ଠା
        ତୁମ ଚିଠି ଅପେକ୍ଷାରେ,
କଳ୍ପନାର ବିଚି        ମଥା ପିଟୁଥିଲେ
        ସ୍ୱପ୍ନ ବେଳାଭୂମି ପରେ ।

ଦିନେ ଏଇ ଚିଠି        ଦେଇଥିଲେ ଭେଟି
        ଆମ ପ୍ରେମର ସମ୍ପର୍କ
ବିବାହ ବନ୍ଧନେ        ବାନ୍ଧି ଦେଇଥିଲେ
        ବିତରି ପ୍ରୀତି ମହକ ।

✠✠

# ପ୍ରିୟା-୫୩

ମାଗିନାହିଁ କେବେ        ଅଞ୍ଜଳିରେ ଭରି
ଦିଅ ସୁନା ରୂପା ହୀରା
କହିନାହିଁ କେବେ        ତୋଳିଆଣି ଦିଅ
ଆକାଶରୁ ଚନ୍ଦ ତାରା ।

ରହିଁଛ ସାନ୍ନିଧ        କରିନାହିଁ ବାଧ
ବସିବାକୁ ନିଜ ପାଖେ
ଅନ୍ତରର କ୍ଳେଶ        ନକରି ପ୍ରକାଶ
ଫୁଟାଇଛ ହସ ମୁଖେ ।

ଅସ୍ତାଚଳ ପଥେ        ଜୀବନସୂରୁଜ
ବାକି ଆଉ ସ୍ୱଳ୍ପ ପଥ
ଅଭିନୟ ଶେଷ        କରିଯିବା ଆସ
ରଖି ହାତ ପରେ ହାତ ।

**

## ପ୍ରିୟା-୫୪

ଆଶା ଅସୁମାରୀ ସାଗର ଲହରୀ
ହୁଏ ନାହିଁ ତା'ର ଅନ୍ତ
ଗୋଟିଏ ପୂରଣ ହେଲା ପରେ ଆନ
ହୋଇଥାଏ ଆବିର୍ଭୂତ ।

ଭୌତିକ ପଦାର୍ଥ ନୁହଁଇ ସମର୍ଥ
ଦେବା ପାଇଁ ଚିର ତୃପ୍ତି
ଯେତେ ପାଉଥିବ ସେତେ ଋହୁଁଥିବ
ମିଳେନାହିଁ କେବେ ମୁକ୍ତି ।

ଜାଗତିକ ସୁଖ ଅଟଇ ଅଳୀକ
ଧାଇଁଛେ ତା ପଛେ ସର୍ବେ
ଏ ମାୟା ବନ୍ଧନ କରିବାକୁ ଛିନ୍ନ
ଭାବେ ନାହେଁ ମନେ କେବେ ।

ଶୈଶବ କୈଶୋର ଯଉବନ ଜରା
ମଣିଷ ଜୀବନେ ଆସେ
ଶେଷ ପର୍ଯ୍ୟାୟରେ ଉପନୀତ ପ୍ରିୟା
ସବୁ ଧୂଆଁ ଧୂଆଁ ଦିଶେ ।

ନୁହେଁ ତୁମେ ରାଧା ନୁହେଁ ମୁହିଁ କୃଷ୍ଣ
ନୁହେଁ ଏ ନିତ୍ୟ ଗୋଲକ
ଯେଉଁ ରାସ ଆମେ ରଚିଛେ ଏ ଭବେ
ସବୁ ଅନିତ୍ୟ ଅଳୀକ ।

ଜନମିଛେ ପ୍ରିୟା ମରିବା ନିଶ୍ଚିତ
ମଲା ପରେ ଜନ୍ମ ନେବା
ଅନିର୍ବାଯ୍ୟ ଯାହା ମନେ ଭାବି ତାହା
କାହିଁକି ଦୁଃଖ କରିବା ।

❖❖

# ପ୍ରିୟା-୫୫

ନେଇଛେ ଜନମ          କରିଛେ କରମ
ଏହି ଧରା ଧାମେ ଆମେ
ସଭିଙ୍କ ସହିତ          ସମ୍ପର୍କର ସେତୁ
ବାନ୍ଧିଅଛେ ଆମେ ପ୍ରେମେ ।

ଏ ସଂସାରେ ପ୍ରେମ          ଏକଇ ମାଧ୍ୟମ
ଶତ୍ରୁ ବି ହୁଏ ନିଜର
ପ୍ରେମେ ହାରିଗଲେ          ହାରିବା ଜନର
ନଥାଏ ମନରେ ଡର ।

ଏହି ପ୍ରେମ ବଳେ          ମୋହିଥିଲେ କୃଷ୍ଣ
ରାଧା ସଙ୍ଗେ ବ୍ରଜବାଳା
ଗୋପପୁର ଛାଡି          ଗଲା ପରେ ମଧ୍ୟ
ଥିଲେ ତାଙ୍କ ହୃଦମାଳା ।

ପ୍ରେମ ବନ୍ଧନରେ          ବାନ୍ଧିହୋଇ ପ୍ରିୟା
ସୁଖେ ବିତାଇଛେ ଦିନ
ରହିଛି ଭରସା          ପ୍ରେମଲଗ୍ନା ହୋଇ
ବିତିବ ଅନ୍ତିମ କ୍ଷଣ ।

## ପ୍ରିୟା-୫୬

ଜାଣିଛ ତ ପ୍ରିୟା          ଏ ଜୀବନ ନୁହେଁ
ବର୍ଷ ମାସ ଦିନ ଦଣ୍ଡ
କର୍ମକରି ସଦା          କର୍ମରେ ଜିଇବା
ଜୀବନର ମାନଦଣ୍ଡ ।

ସେହି ପଥ ପ୍ରିୟା          ଅନୁସରି ଆମେ
ଚାଲିଛେ ଜୀବନ ପଥ
ବାଧା ବିଘ୍ନ ଯେତେ          ଆସିଛି ଜୀବନେ
ହୋଇନେ ପଥୁ ବିଚ୍ୟୁତ ।

କର୍ମ କରିବାରେ          ଅଧିକାର ଅଛି
ଯାଇଛେ କରମ କରି
କର୍ମଫଳ ଯେତେ          ଦୁଃଖଦ ହେଲେ ବି
ହୋଇନେ ବିଷାଦେ ଘାରି ।

ହିଂସା ଦ୍ୱେଷ କାମ          କ୍ରୋଧ ଲୋଭ ମୋହ
ଯେତେ ବିନାଶର ପଥ
ବରଜିବା ପାଇଁ          ପ୍ରାରମ୍ଭରୁ ପ୍ରିୟା
କରାଇଅଛ ଶପଥ ।

ସେଥିପାଇଁ ପ୍ରିୟା ଜୀବନଟା ଆଜି
କେତେ ସରଣ୍ଣ ସୁନ୍ଦର
ପ୍ରେମ ବନ୍ଧନରେ ବାନ୍ଧି ସମସ୍ତଙ୍କୁ
କରି ପାରିଛେ ନିଜର ।

ଜୀବନ ସକାଳ ଯାଇଅଛି ବିତି
ସଂଜ ଆସେ ମାଡି ମାଡି
ବାକି ଯଦି କିଛି କର୍ମ ଅଛି ପ୍ରିୟା
ପୂର୍ଣ୍ଣ କରି ଯିବା ଛାଡି ।

✠✠

# ପ୍ରିୟା-୫୭

ପଢ଼ିନାହିଁ ମୁହିଁ      ଗୀତା ଭାଗବତ
    ବେଦ ଆଦି ଧର୍ମ ଗ୍ରନ୍ଥ
ଜାଣିନାହିଁ ମୁହିଁ      ଏ ଭବ ସଂସାରେ
    ଜୀବନର ଗୂଢ଼ ତତ୍ତ୍ୱ ।

ରହିଛି ବିଶ୍ୱାସ      କେହି ସେ ଅଦୃଶ୍ୟ
    କରିଛନ୍ତି ଏ ସୃଜନ
ତାଙ୍କରି ଇଙ୍ଗିତେ      ନିଜ ନିଜ ପଥେ
    କରନ୍ତି ସର୍ବେ ଭ୍ରମଣ ।

ସେ ଅଦୃଶ୍ୟ ଶକ୍ତି      ଚରଣେ ଭକତି
    ରଖିଅଛେ ପ୍ରିୟା ଆମେ
ଅଭିନୟ ଆମ      ସରି ଆସିଲାଣି
    ସମ୍ଭବତଃ ଧରା ଧାମେ ।

ଭଗବତ ପ୍ରାପ୍ତି      ପାଇଁ ପ୍ରେମେ ଭକ୍ତି
    ସବୁଠୁ ସହଜ ମାର୍ଗ
ସେହି ପଥେ ପ୍ରିୟା      ଚାଲିଛେ ଚାଲିବା
    ଜୀବନର ଶେଷ ଭାଗ ।

ରାଧା ମୀରା ପ୍ରେମ ପ୍ରେମର ଚରମ
ନିଦର୍ଶନ ଏ ସଂସାରେ
ସେହି ପଥେ ଚଲି ସଂସାର ସାଗର
ପାର ପାଇଁ ଠିଆ ତୀରେ ।

✠✠

# ପ୍ରିୟା-୫୮

ତୁମଠୁ ଶୁଣିଛି ଏ ଜଗତ ମିଥ୍ୟା
ବ୍ରହ୍ମ ଏକମାତ୍ର ସତ୍ୟ
ପଞ୍ଚଭୂତେ ଗଢା ଆମ ଏ ଶରୀର
କେବଳ ନିମିତ୍ତ ମାତ୍ର ।

ମୋହ ବଶ ହୋଇ ନଷ୍ଟ ହେବାପାଇଁ
ଯେପରି ପତଙ୍ଗଗଣ
ପ୍ରଜ୍ୱଳିତ ଅଗ୍ନି ମଧ୍ୟେ ପ୍ରବେଶନ୍ତି
ଅତି ବେଗେ ପ୍ରତିକ୍ଷଣ ।

ସେହିପରି ପ୍ରିୟା ଆମେ ପ୍ରତିକ୍ଷଣେ
ଅତ୍ୟନ୍ତ ବେଗରେ ଧାଇଁ
ପ୍ରବେଶିବା ସେଇ ଅଦୃଶ୍ୟ ଅଗ୍ନିରେ
ନିଜର ବିନାଶ ପାଇଁ ।

ସ୍ୱଧର୍ମେ ମରଣ ବରଂ ଶ୍ରେୟ ଜାଣ
ଅଟେ କଲ୍ୟାଣ କାରକ
ପରଧର୍ମ ପ୍ରିୟା ଆଚରଣ କଲେ
ଅତ୍ୟଧିକ ଭୟାନକ ।

ତେଣୁ ପ୍ରିୟା ପ୍ରେମ ମାନିଛେ ସ୍ୱଧର୍ମ
ମୃତ୍ୟୁ ପର୍ଯ୍ୟନ୍ତ ଆଚରି
ଶରୀର ଛାଡିବା ଏକାକାର ହେବା
ପଞ୍ଚଭୂତେ ମିଶିକରି ।

**

# ପ୍ରିୟା-୫୯

ଏ ଜୀବନ ପାତ୍ର     କରିଛନ୍ତି ପୂର୍ଣ୍ଣ
ନାନା ଭାବେ ଜଗପତି
କିପରି କହିବା     କିଛି ପାଇନାହେଁ
ନୁହେଁ ଆମେ ମୂଢ଼ମତି ।

ସେହି ପ୍ରିୟତମ     ହରିଛନ୍ତି ଭ୍ରମ
କି ମାଗିବା ତାଙ୍କୁ ଆଉ
ଏ ଶେଷ ମାଗୁଣି     ଜୀବନ ତରଣୀ
ବିନା ବିଘ୍ନେ ଭାସିଯାଉ ।

ବଢ଼ାଇଛନ୍ତି ସେ     ସମ୍ପର୍କର ହାତ
ଏ ଆମ ଜୀବନ ପଥେ
ଛଡ଼ାଇଛନ୍ତି ସେ     ସବୁ ଜାଣି ଜାଣି
ଆମର ଜ୍ଞାତ ଅଜ୍ଞାତେ ।

ପାହିବା ଆଗରୁ     ମିଳନର ରାତି
ଗାଇବା ତାଙ୍କ ବନ୍ଦନା
ସେ ପାଇଁ ସେ ଆମ     ଜୀବନ ବୀଣାରେ
ଭରିଛନ୍ତି ମୂର୍ଚ୍ଛନା ।

✠✠

## ପ୍ରିୟା-୬୦

ଜାଣିଛ ତ ପ୍ରିୟା ଭାରତ ଯୁଦ୍ଧରେ
ଅର୍ଜୁନ ବିଷାଦ କଥା
ସ୍ୱୟଂ ଭଗବାନ ବୁଝାଇଥିଲେ ଯେ
ଜୀବନ ଦର୍ଶନ ଗାଥା ।

ଆଜି ଯେମାନଙ୍କୁ ଆପଣାର ବୋଲି
ଭାବୁଅଛେ ଏଠି ଆମେ
ଜାଣିନାହେଁ ଆମେ କେ କାହାର ଥିଲେ
ସେମାନେ ପୂର୍ବ ଜନମେ ।

ପର ଜନ୍ମେ ପୁଣି କେ କଣ ହୋଇବେ
ସେ କଥା ବି ଜାଣିନାହେଁ
ତଥାପି ଏ ମନ ହୁଅଇ ଅଧୀର
ତାଙ୍କପାଇଁ ମାୟା ମୋହେ ।

ପିନ୍ଧିବା ବସନ ହୋଇଗଲେ ଜୀର୍ଣ୍ଣ
ଯେପରି ଏଇ ମଣିଷ
ତ୍ୟାଗକରି ତାକୁ ଗ୍ରହଣ କରଇ
ଅନ୍ୟ ଏକ ନୂଆ ବାସ ।

ସେହିପରି ପ୍ରିୟା   ଦିନେ ଏହି ଆତ୍ମା
ତ୍ୟାଗକରି ଆମ ଘଟ
ଅନ୍ୟ କେଉଁ ଏକ   ନୂତନ ଘଟରେ
ହୋଇବ ଯାଇ ପ୍ରକଟ ।

ତେଣୁ ପ୍ରିୟା ଏହି   ମୃତ୍ୟୁର୍ମୁଖୀ ଦେହ
ହୋଇଯିବ ଯେବେ ନଷ୍ଟ
ସେଥିପାଇଁ ଦୁଃଖେ   ମ୍ରିୟମାଣ ହୋଇ
ଦେବାନି ମନକୁ କଷ୍ଟ ।

**

## ପ୍ରିୟା-୬୧

ପଙ୍କରୁ ଜାତ ଏ ପଙ୍କଜର ପତ୍ରେ
ସରସୀ ପଙ୍କିଳ ଜଳ
ପତ୍ରକୁ ମଜେଇ ପାରେନା ଭିଜେଇ
ହେଉଥାଏ ଢଳଢଳ ।

ସେହିପରି ଏହି ପଙ୍କିଳ ଶରୀର
ମଧ୍ୟେ ଆତ୍ମା ବିରାଜିତ
ଶରୀରର ପଙ୍କ ଛୁଇଁ ପାରେନାହିଁ
ସଦା ଥାଏ ଶୁଦ୍ଧ ପୂତ ।

ଶରୀର ଅବଶ ହୋଇଲେ ଅବଶ୍ୟ
ଆତ୍ମାପକ୍ଷୀ ଯିବ ଉଡ଼ି
ନୀରବ ନିଶ୍ଚଳ ଶରୀରଟା ଏଠି
ଶବ ଭାବେ ଥିବ ପଡ଼ି ।

ଯେତେ ଜ୍ଞାନୀ ଗୁଣୀ ଅବା ଋଷି ମୁନି
ଜନ୍ମିଛନ୍ତି ଏ ସଂସାରେ
ଜିଇ ନାହାନ୍ତି କେ ଚିରଦିନ ପାଇଁ
ଏହି ଭବ ଭୂମିପରେ ।

ସେଥିପାଇଁ ପ୍ରିୟା ଜୀବନ ଜିଇବା
ପାଇଁକି ଶରୀର ସେବା
କରିବା ଆମର କର୍ତ୍ତବ୍ୟ ନିଶ୍ଚିତ
ଯେତେଦିନ ବଞ୍ଚିଥିବା ।

ପ୍ରେମରେ ଭକତି ମିଶାଇବା ପ୍ରିୟା
ନାମ ତା ହୋଇବ ରାଧା
ପ୍ରେମିକ ପ୍ରବର ସେ କଳାଠାକୁର
ହୃଦୟରେ ହେବା ଛନ୍ଦା ।

# ପ୍ରିୟା-୭୨

ଶ୍ରୀରାଧା ବାତୁଳୀ ପ୍ରେମରସାତୁଳୀ
ଶାଶ୍ୱତ ପ୍ରେମର ଗାଥା
ଜାଣିଛ ତ ପ୍ରିୟେ ଥିଲେ ପରା ସିଏ
କୃଷ୍ଣଙ୍କ ଅଭିନ୍ନ ସତ୍ତା ।

କୃଷ୍ଣ ପ୍ରେମେ ମଜି ରାଜ ସୁଖ ତେଜି
ମୀରା ବି ହେଲେ ଯୋଗିନୀ
ରଚିଗଲେ ଧରା ବକ୍ଷରେ ପ୍ରେମର
ଦିବ୍ୟ ଅମର କାହାଣୀ ।

ସକଳ ପ୍ରାଣୀଙ୍କ ମଧ୍ୟେ ସମ ଭାବେ
ବ୍ୟାପ୍ତ ସେ ପ୍ରେମୀ ପରମ
ଯିଏ ତାଙ୍କୁ ପ୍ରେମେ ଭଜନ କରନ୍ତି
ସେ ତାଙ୍କୁ କରନ୍ତି ପ୍ରେମ ।

ପ୍ରେମ ଭକତିରେ     ଶ୍ରଦ୍ଧା ଓ ପ୍ରୀତିରେ
ଯିଏ ଯାହା ଅରପଇ
ପତ୍ର ପୁଷ୍ପ ଫଳ     ଅବା ହେଉ ଜଳ
ଭୁଞ୍ଜନ୍ତି ପ୍ରକଟ ହୋଇ ।

ସେଥିପାଇଁ ପ୍ରିୟା     ପ୍ରେମ ଭକତିରେ
ତାଙ୍କରି ପୂଜନେ ମଜି
ବିତାଇବା ଆମେ     ବାକୀ ଏ ଜୀବନ
ତାଙ୍କ ନାମ ଭଜି ଭଜି ।

## ପ୍ରିୟା-୬୩

ଆମେ ପ୍ରିୟା ଛାର ମଣିଷ ଏ ଭବେ
ସେ ଅଟନ୍ତି ଜଗଦୀଶ
ଆମେ ସଦା ମର୍ତ୍ତ୍ୟମୁଖୀ ଏ ସଂସାରେ
ସେ ଅଟନ୍ତି ଅବିନାଶ ।

ସେ ଅଟନ୍ତି ପ୍ରଜ୍ୱଳିତ ହୁତାଶନ
ଆମେ ପ୍ରଲୁବ୍ଧ ପତଙ୍ଗ
ସେହି ହୁତାଶନେ ପ୍ରେମେ ଝାସ ଦେଲେ
ମିଳିବ ତାଙ୍କର ସଙ୍ଗ ।

ସେହି ଆଦିଦେବ ପୁରାଣ ପୁରୁଷ
ବିଶ୍ୱର ପରମାଶ୍ରୟ
ସାରା ବିଶ୍ୱେ ବ୍ୟାପ୍ତ ସେ ପରମ ଧାମ
ସେହି ଜ୍ଞାତ ସେହି ଜ୍ଞେୟ ।

ରୂପ ସେ ଅଟନ୍ତି        ଆଦି ମଧ୍ୟ ଅନ୍ତ
କଳିବା କାହାର ସାଧ
ସେହି ହିଁ ଜାଣନ୍ତି        ଏ ସାରା ଜଗତେ
ତାଙ୍କ ରୂପାୟଣ ଭେଦ ।

ସେ ପ୍ରେମୀ ପୁରୁଷ        ନାମ ଅହର୍ନିଶ
ଭଜିବାକୀ ଏ ଜୀବନେ
ବିତିଯାଉ ଦିନ        ଏତିକି ମାଗୁଣି
ସେହି କମଳ ଚରଣେ ।

❋❋

ମିଲ୍ଲା ପ୍ରିୟା

## ପ୍ରିୟା-୬୪

ସର୍ବଗୁଣ ପୂର୍ଣ୍ଣ ପ୍ରତିଷ୍ଠା ସମ୍ପନ
ଯେପରି ସାଗର ନୀର
ହୁଏନି ଅସ୍ଥିର ନାନା ନଦୀ ନୀର
ପ୍ରବେଶିଲେ ବାରମ୍ବାର ।

ସେହିପରି କାମ ପୁରୁଷ ନିଷ୍କାମ
ମନେ ନଆଣି ବିକାର
ତା ମଧ୍ୟେ ପ୍ରବେଶ କଲେ ବି ପୁରୁଷ
ମନ ହୁଏନି ଅସ୍ଥିର ।

ନିଷ୍କାମ କର୍ମର ପଥେ ଚଳି ପ୍ରିୟା
ପ୍ରେମେ ବିତାଇଛେ ଦିନ
ନାହିଁ ଆଉ ପ୍ରିୟା ଅଭିଳାଷ କିଛି
ପାଇବାକୁ ଧନ ମାନ ।

ଉଜାଣି ଯମୁନା ବହିବାର ବେଳ
ସମ୍ଭବତଃ ଉପଗତ
ଶୁଭେନାହିଁ ଆଉ ମୁରଲୀର ସ୍ୱନ
କୁଞ୍ଜବନେ ରାସଗୀତ ।

ଶରୀର କଦମ୍ବ ବୃକ୍ଷ ଆଜି ରୁକ୍ଷ
ପତ୍ରମାନ ଗୋଟି ଗୋଟି
ଭୂମିପରେ ଖସି ପଡୁଛନ୍ତି ନିତି
ବୃକ୍ଷ ବି ପଡିବ ଲୋଟି ।

କରନାହିଁ ଭୟ ମନେ ଆଗୋ ପ୍ରିୟେ
ଭାବି ସେ ଶେଷ ମୁହୂର୍ତ୍ତ
ଶରୀରରୁ ଆତ୍ମା ଛାଡି ଦିନେ ଯିବ
ଏତ ଚିରନ୍ତନ ସତ୍ୟ ।

卐卐

## ପ୍ରିୟା-୬୫

ପ୍ରତି 'ଆଜି' ବିତି ହୋଇଯାଏ 'କାଲି'
ଏତ ସମୟର ରୀତି
ଜୀବନକୁ ସପ୍ତ ରଙ୍ଗେ ଭରିଦେବା
ହେଉ ପ୍ରିୟା ଆମ ନୀତି ।

ରଙ୍ଗିନ ପଦାର୍ଥ ସର୍ବଦା ନେତ୍ରକୁ
କରିଥାଏ ଆକର୍ଷିତ
ଜୀବନ ଆମର ରଙ୍ଗହୀନ ହେଲେ
ରହିଯିବ ଅବାଞ୍ଛିତ ।

ଆନନ୍ଦର ଏକ ଅଂଶ ଭାବେ ଆମେ
ଜନମିଛେ ଏ ସଂସାରେ
ଆନନ୍ଦ ପାଇବା ପଛରେ ଧାଇଁଛେ
ମୃତ୍ୟୁ ପର୍ଯ୍ୟନ୍ତ ଏଠାରେ ।

ଆନନ୍ଦକନ୍ଦଙ୍କୁ ପାଇବାକୁ ପ୍ରିୟା
ହେଉପଛେ ଯେତେ କଷ୍ଟ
ସହିବା ସେ କଷ୍ଟ ପାଇବା ନିମିତ୍ତ
ଜୀବନର ସେ ଅଭୀଷ୍ଟ ।

ପ୍ରତିଟି ପ୍ରଭାତ ଭେଟିଥାଏ ଆଣି
ଆନନ୍ଦ ସହ ବିଷାଦ
ସେଥିରୁ ଗୋଟିଏ ବାଛିନେବା ଅଟେ
ଆମ ନିଜର ପସନ୍ଦ ।

**

# ପ୍ରିୟା-୬୬

ଜନ୍ମ ହେଲେ ମୃତ୍ୟୁ ସୁନିଶ୍ଚିତ ଏହା
ଧ୍ରୁବ ସତ୍ୟ ଗୀତା ବାଣୀ
ମୃତ୍ୟୁର ବେଦନା କମ୍ ଅବା ବେଶୀ
କେହି ପାରିନାହିଁ ଜାଣି।

ଜନ୍ମଠାରୁ ମୃତ୍ୟୁ ସଂଘର୍ଷର ଋତୁ
ନାଆଁଟି ତା'ର ଜୀବନ
ଜୀବନ ଜିଇବା ପାଇଁକି ଜରୁରୀ
ସଂଘର୍ଷ ହିଁ ପ୍ରତିକ୍ଷଣ।

ଛୋଟ ଠାରୁ ବଡ କେହି ନୁହେଁ ଛାଡ
ସର୍ବେ ତା ପାଇଁ ସମାନ
କଷ୍ଟ ନକରିଲେ ମିଳନ୍ତିନି କୃଷ୍ଣ
ରହିଛି ଏହି ଆଖ୍ୟାନ।

ପଶୁ ପକ୍ଷୀ କୀଟ ପତଙ୍ଗ ପର୍ଯ୍ୟନ୍ତ
ସରବେ ସଂଘର୍ଷେ ରତ
ବିନା ସଂଘର୍ଷରେ ସମ୍ଭବ ନୁହଁଇ
ଚଳିବା ଜୀବନ ପଥ।

ଜୀବନର ଏହି ସାୟାହ୍ନରେ ଆଜି
ଯାହା ଆମେ ଦେଖୁ ପ୍ରିୟା
ପ୍ରିୟ ପରିଜନ ସନ୍ତାନ ସନ୍ତତି
ସବୁ ଜାଗତିକ ମାୟା ।

ଯେତେଦିନ ଏଠି ରହିଥିବା ପ୍ରିୟା
ପ୍ରେମେ ବିତିଯାଉ ଦିନ
ସରବେ ସବୁରି ମଙ୍ଗଳ ଇଛନ୍ତୁ
ସର୍ବେ ଭବନ୍ତୁ ସୁଖିନଃ ।

❋❋






ବାଉରିବନ୍ଧୁ ଲେଙ୍କାଙ୍କ ଜନ୍ମ ୧୯୫୩ ମସିହା ଫେବୃଆରୀ ୧୨ ତାରିଖରେ। ଜନ୍ମସ୍ଥାନ କଟକ ଜିଲ୍ଲାର ଏକ ଅଖ୍ୟାତ ଗ୍ରାମ ତରଡାପଡା। ପାଠପଢା ସମୟରେ କବିତା ପ୍ରତି ଯଦିଓ ଆଗ୍ରହ ଥିଲା ନିଜ ଭିତରେ ତାଙ୍କ ପ୍ରତିଭାକୁ ଲୁଚାଇ ରଖିଥିବାରୁ ତାହା ଲୋକଲୋଚନକୁ ଆସିପାରି ନଥିଲା। କଲେଜ ପଢିବା ସମୟରେ ରଚିତ ତାଙ୍କର କିଛି କବିତା ତାଙ୍କର ପ୍ରଥମ କବିତା ସଂକଳନ 'ଖୋଲି କହିଦେଲି କଥା ମନର'ରେ ସ୍ଥାନ ପାଇଛି। ଶ୍ରୀ ଲେଙ୍କା ପାଠପଢା ପରେ ବ୍ୟାଙ୍କ ସେବାରେ ସେବାରତ ରହି ସାହିତ୍ୟ ସାଧନାକୁ ସମ୍ପୂର୍ଣ୍ଣ ରୂପେ ଛାଡି ଦେଇଥିଲେ। ଅବସର ନେବା ପରେ ପୁନଶ୍ଚ ତାଙ୍କର ମନରେ ସାହିତ୍ୟ ପ୍ରତି ଅନୁରାଗ ସୃଷ୍ଟି ହୋଇଥିଲା ଓ ସେ କବିତା ଲେଖିବାରେ ନିଜକୁ ହଜାଇ ଦେଇଛନ୍ତି। ଶ୍ରୀ ଲେଙ୍କାଙ୍କର ଅନେକ କବିତା ବିଭିନ୍ନ ପତ୍ରିକାର ପୃଷ୍ଠା ମଣ୍ଡନ କରିଛି। ତାଙ୍କର ପ୍ରକାଶିତ ପୁସ୍ତକ ଗୁଡିକ ହେଉଛି - ଖୋଲି କହିଦେଲି କଥା ମନର (କବିତା ସଂକଳନ), ମୋ ଗାଆଁ ମୋ କବିତା (କବିତା ସଂକଳନ), ଶୁଣ ଗୁହାରି ହେ ବିଶ୍ୱ ବିହାରୀ (ଭକ୍ତି କବିତା ସଂକଳନ), ମେଘଦୂତ (ଅନୁବାଦ କାବ୍ୟ), ଋତୁସଂହାରମ୍ (ଅନୁବାଦ କାବ୍ୟ), ଅନାବନା (କବିତା ସଂକଳନ)

ପ୍ରେମ ରସ ଉପରେ ଆଧାରିତ ତାଙ୍କର କବିତା ସଂକଳନ ପ୍ରିୟା ବିପୁଳ ପାଠକ, ପାଠିକାଙ୍କ ହୃଦୟ ଜିଣିବ ଏଇ ବିଶ୍ୱାସ ଆମେ ରଖୁଛୁ।

- ପ୍ରକାଶକ




ବନଫୁଲ

Priya
By Bauribandhu Lenka

Published By Banaphula
Call: 94376[illegible]